

ଜନ୍ମ :
ଦୀପାବଳୀ, ବୁଧବାର
ତା ୨୮ । ୧୦ । ୧୯୧୧

ମୃତ୍ୟୁ :
ବୈଶାଖ କୃଷ୍ଣ ପ୍ରତିପଦ
ତା ୨୦ । ୪ । ୧୯୮୧

ମଣିଷ ମରବ ଏତେ ଜନ୍ମ ହୋଇ ଦେବତା ବ ମରେ ।
ସାର୍ଥକ ମରଣ ତାର ଯାହାଲାଗି ମାଟିଗୋଡି ଝୁରେ ।

# Souvenir
## ON
## Late K.N.MAHAPATRA

# କେଦାରନାଥ-ସ୍ମରଣିକା

ଓଡ଼ିଶାର ବିଶିଷ୍ଟ ଐତିହାସିକ ଶ୍ରୀ କେଦାରନାଥ ମହାପାତ୍ରଙ୍କର ଅକାଳ ବିୟୋଗରେ ମୁଁ ମର୍ମାହତ ହୋଇଛି । ବହୁ ପ୍ରାଚୀନ ଶିଳାଲେଖ, ତାମ୍ରଲିପି ଆଦିକୁ ଉଦ୍ଧାର କରି ଓଡ଼ିଶା ଇତିହାସର ଅନେକ ଅଜ୍ଞାତ ଅଧ୍ୟାୟ ସମ୍ପର୍କରେ ମୌଳିକ ଗବେଷଣା କରି ସେ ଓଡ଼ିଶାର ଇତିହାସକୁ ଋଦ୍ଧିମନ୍ତ କରିଛନ୍ତି । ଭୁବନେଶ୍ୱରର ମନ୍ଦିର, ଖଣ୍ଡଗିରି ଓ ଧଉଳିଗିରିର ପ୍ରାଚୀନ ଐତିହାସିକ କୀର୍ତ୍ତି ତାଙ୍କର ଲେଖନୀରେ ପ୍ରାଣବନ୍ତ ହୋଇ ଉଠିଛି । ରାଜ୍ୟ ସଂଗ୍ରହାଳୟକୁ ଏକ ସୁପ୍ରତିଷ୍ଠିତ ଅନୁଷ୍ଠାନ ରୂପେ ଗଢି ତୋଳିବା ପାଇଁ ତାଙ୍କର ଦାନ ଅବିସ୍ମରଣୀୟ । ଏହି ଅଳ୍ପଦିନ ତଳେ ଭୁବନେଶ୍ୱରର ଏକ ବାଳିକା ବିଦ୍ୟାଳୟର ପୁରସ୍କାର ବିତରଣୀ ଉତ୍ସବରେ ତାଙ୍କ ସହିତ ମୋର ସାକ୍ଷାତ ହୋଇଥିଲା । ସେ ତାଙ୍କ ରଚିତ କେତେକ ପୁସ୍ତକ ମୋତେ ଉପହାର ଦେଇଥିଲେ । ଓଡ଼ିଶାର ଐତିହ୍ୟ ଓ ପରମ୍ପରା ପ୍ରତି ତାଙ୍କର ଐକାନ୍ତିକ ଶ୍ରଦ୍ଧା ଥିଲା । ସେ ଏତେ ଶୀଘ୍ର ଚାଲିଯିବେ ବୋଲି ମୁଁ କେବେ ବିଚାରି ନ ଥିଲି । ତାଙ୍କର ବିୟୋଗରେ ଓଡ଼ିଶାର ଇତିହାସ ଗବେଷଣା କ୍ଷେତ୍ରରେ ଅପୂରଣୀୟ କ୍ଷତି ଘଟିଛି ଓ ଉତ୍କଳ ଜନନୀ ତାଙ୍କର ଏକ ଯୋଗ୍ୟ ସନ୍ତାନକୁ ହରାଇଲେ । ମୁଁ କେଦାର ବାବୁଙ୍କ ଶୋକ ସନ୍ତପ୍ତ ପରିବାର-ବର୍ଗଙ୍କୁ ମୋର ଗଭୀର ଶୋକପୂର୍ଣ୍ଣ ସମବେଦନା ଜଣାଉଛି ।

ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ
ମୁଖ୍ୟମନ୍ତ୍ରୀ, ଓଡ଼ିଶା ।

ଭୁବନେଶ୍ୱର
ତା ୨୦।୪।୧୯୮୧

ଓଡ଼ିଶାର ବିଶିଷ୍ଟ ଐତିହାସିକ, ଗବେଷକ, ସାହିତ୍ୟିକ, ପ୍ରତ୍ନତତ୍ତ୍ୱବିତ୍ କେଦାରନାଥ ମହାପାତ୍ର ଆଉ ଇହ ଜଗତରେ ନାହାନ୍ତି । ତାଙ୍କର ମହାପ୍ରୟାଣରେ ଓଡ଼ିଶାର ଇତିହାସ ଜଗତରୁ ଏକ ମହୋଜ୍ଜ୍ୱଳ ନକ୍ଷତ୍ର ଅନ୍ତର୍ହିତ ହୋଇଗଲା । ସେ ଅର୍ଦ୍ଧଶତାବ୍ଦୀ ଧରି ଇତିହାସ, ସାହିତ୍ୟ ଉପରେ ଗବେଷଣା କରି ଯେଉଁ ନୂତନ ତଥ୍ୟ ପ୍ରଦାନ କରି ଯାଇଛନ୍ତି ତାହା ଓଡ଼ିଶାର ସଂସ୍କୃତି କ୍ଷେତ୍ରରେ ନୂତନ ଆଲୋକପାତ କରିଛି । ଓଡ଼ିଶାର ଲେଖକ ଓ ଗବେଷକମାନେ କେଦାରବାବୁଙ୍କ ପଥ ଅନୁସରଣ କରି ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ନୂତନ ତଥ୍ୟ ଆବିଷ୍କାର କଲେ ତାଙ୍କ ପ୍ରତି ଉପଯୁକ୍ତ ଶ୍ରଦ୍ଧାଞ୍ଜଳି ହେବ । କେଦାରବାବୁଙ୍କ ସମ୍ବନ୍ଧରେ ଏକ ସ୍ମରଣିକା ପ୍ରକାଶ ପାଉଥିବା ଶୁଣି ଆନନ୍ଦିତ ହେଲି । ଏଇ ଅବସରରେ ତାଙ୍କ ସ୍ୱର୍ଗତ ଆତ୍ମା ପ୍ରତି ମୁଁ ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

ଶ୍ରୀ ଯୁଗଳ କିଶୋର ପଟ୍ଟନାୟକ
ରାଷ୍ଟ୍ରମନ୍ତ୍ରୀ
ପର୍ଯ୍ୟଟନ, କ୍ରୀଡ଼ା ଓ ସଂସ୍କୃତି, ଓଡ଼ିଶା

ଭୁବନେଶ୍ୱର
ତା ୨୭।୪।୧୯୮୧

.. ଭାରତର ବିଶିଷ୍ଟ ଐତିହାସିକ ଗବେଷକ ଓ ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ମଧ୍ୟରେ ସ୍ୱର୍ଗତଃ କେଦାରନାଥ ମହାପାତ୍ର ଅନ୍ୟତମ । ପାଠ୍ୟ ପୁସ୍ତକ ଜାତୀୟକରଣ ହେବା ପୂର୍ବରୁ ଉଚ୍ଚ ପ୍ରାଥମିକ ଶ୍ରେଣୀରୁ ଆରମ୍ଭ କରି ମାଟ୍ରିକ ପର୍ଯ୍ୟନ୍ତ ତାଙ୍କର ରଚିତ ଇତିହାସ ବହିଗୁଡ଼ିକୁ ପିଲାମାନେ ପଢ଼ୁଥିଲେ । ସେ ମୋର ଶିକ୍ଷକ ଥିଲେ କଟକ କଲେଜିଏଟ୍ ସ୍କୁଲରେ ୪୬ ବର୍ଷ ତଳେ । ସେହିଦିନଠାରୁ ମୋର ତାଙ୍କ ସଙ୍ଗେ ପରିଚୟ । ତାଙ୍କର ରଚିତ "ଶ୍ରୀ ଖାରବେଳ", "ଧଉଳି ଇତିହାସ", "ଖୋର୍ଦ୍ଧା ଇତିହାସ", "ଶ୍ରୀ ଜୟଦେବ ଓ ଗୀତଗୋବିନ୍ଦ" ପ୍ରଭୃତି ପୁସ୍ତକ ଓଡ଼ିଶାର ଐତିହ୍ୟ, ସାହିତ୍ୟ ଓ ପ୍ରତ୍ନତତ୍ତ୍ୱ କ୍ଷେତ୍ରରେ ଅପୂର୍ବ ଅବଦାନ । ବହୁ ପ୍ରାଚୀନ ଶିଳାଲିପି ଓ ତାମ୍ରଲିପି ପ୍ରଭୃତିର ଉଦ୍ଧାର କରି ଓଡ଼ିଶା ଇତିହାସର ଅଜଣା ଅଧ୍ୟାୟ ଗୁଡ଼ିକ ଉପରେ ନିରବଚ୍ଛିନ୍ନ ଗବେଷଣା କରି ସେ ଓଡ଼ିଶାର ଇତିହାସ ସମୃଦ୍ଧ କରିଛନ୍ତି । ରାଜ୍ୟ ସଂଗ୍ରହାଳୟକୁ ସୁପ୍ରତିଷ୍ଠିତ କରାଇବାରେ ତାଙ୍କର ଅବଦାନ ଚିରସ୍ମରଣୀୟ ହୋଇ ରହିବ ।

ତାଙ୍କର ନିଷ୍ଠାପର କର୍ମପ୍ରବଣତା, ନିରଳସ ଜୀବନ ଯାପନ ଓ ସ୍ନେହପୂର୍ଣ୍ଣ ବ୍ୟବହାର ହେତୁ ସେ ସମସ୍ତଙ୍କର ପ୍ରିୟଭାଜନ ହୋଇ ପାରିଥିଲେ । ତାଙ୍କର ଆଦର୍ଶ ଆମ ସମସ୍ତଙ୍କୁ ଅନୁପ୍ରାଣିତ କରୁ, ଏହାହିଁ କାମନା ।

ଭୁବନେଶ୍ୱର

ତା. ୨୭-୪-୧୯୮୧

ଶ୍ରୀସୁଧାଂଶୁ ମୋହନ ପଟ୍ଟନାୟକ

ମୁଖ୍ୟ ଶାସନସଚିବ, ଓଡ଼ିଶା

ଓଡ଼ିଶାର ସୁବିଖ୍ୟାତ ଐତିହାସିକ ପୂଜ୍ୟପାଦ କେଦାରନାଥ ମହାପାତ୍ର ଚାଲିଗଲେ । ସେ ଥିଲେ ଏକାଧାରରେ ସାହିତ୍ୟିକ, ଐତିହାସିକ, ପ୍ରତ୍ନତତ୍ତ୍ୱବିତ୍ ଏବଂ ଗବେଷକ । ଓଡିଶାର ସଂସ୍କୃତ ରଚନା ଓ ରଚୟିତାଙ୍କ ବିଷୟରେ ତାଙ୍କ ଲିଖିତ ପ୍ରାମାଣିକ ଗ୍ରନ୍ଥମାନ ଓଡ଼ିଶାର ଇତିହାସରେ ଏକ ଅବିନଶ୍ୱର କୀର୍ତ୍ତି । ତାଙ୍କପରି ମିଷ୍ଟଭାଷୀ, ବିନୟୀ, ସ୍ୱାଧୀନଚେତା, ସ୍ୱଦେଶବତ୍ସଳ ଏବଂ ନୀରବ ସାଧକ ବିରଳ । ତାଙ୍କ ବିୟୋଗରେ ଉତ୍କଳର ଏକ ଅପୂରଣୀୟ କ୍ଷତି ଘଟିଲା । ତାଙ୍କର ଆଦର୍ଶ ସମସ୍ତଙ୍କୁ ଅନୁପ୍ରାଣିତ କରୁ ଏହାହିଁ ଆଶା ।

ଭୁବନେଶ୍ୱର

ତା ୨୭/୪--୧୯୮୧

ଶ୍ରୀବିମଳ କିଶୋର ମିଶ୍ର

ଅତିରିକ୍ତ ମୁଖ୍ୟ ଶାସନସଚିବ, ଓଡ଼ିଶା

ଦିଲ୍ଲୀରୁ ପ୍ରତ୍ୟାବର୍ତ୍ତନ ପରେ ଶୁଣିଲି ଐତିହାସିକ କେଦାରନାଥ ମହାପାତ୍ରଙ୍କ ହଠାତ୍ ପରଲୋକ ହୋଇଯାଇଛି । ସେଥିରେ ମୁଁ ମର୍ମାହତ ହୋଇ ପଡ଼ିଲି, କାରଣ ସ୍ୱର୍ଗତ ମହାପାତ୍ର ସମ୍ବଲପୁର ଜିଲ୍ଲା ସ୍କୁଲରେ ମୋର ଶିକ୍ଷକ ଥିଲେ । ସେ ଜଣେ ସରଳ ନିଷ୍ଠାପର ଏବଂ ଆଦର୍ଶ ଗୁରୁ ଥିବା ଯୋଗୁଁ ସ୍କୁଲରେ ଏବଂ ସହରରେ ସମସ୍ତେ ତାଙ୍କୁ ଆଦର ଓ ସମ୍ମାନ କରୁଥିଲେ । ତାଙ୍କର ଇତିହାସ ଶିକ୍ଷାଦାନରେ ସର୍ବଦା ଜାତିପ୍ରେମ ବହ୍ନିର ଅଗ୍ନିକଣା ଅନ୍ତଃନିହିତ ରହୁଥିଲା । ସେ ଓଡ଼ିଶାର ମହାନ୍ ଐତିହ୍ୟ ଏବଂ ସଂସ୍କୃତି ସମ୍ବନ୍ଧରେ ବ୍ୟାଖ୍ୟାନ କଲାବେଳେ ଭବିଷ୍ୟତ ଓଡ଼ିଶା ନିର୍ମାଣ ଉଜ୍ଜ୍ୱଳତର କରିବା ପାଇଁ ପ୍ରେରଣା ଦାନ କରୁଥିଲେ ।

ସ୍ୱର୍ଗତ ମହାପାତ୍ର ଏକାଧାରରେ ଜଣେ ଐତିହାସିକ, ପ୍ରତ୍ନତତ୍ତ୍ୱବିତ୍ ସାହିତ୍ୟିକ ଏବଂ ଲେଖକ ଥିଲେ । ଏହି ଐତିହାସିକ ନିଜେ ଇତିହାସ ସୃଷ୍ଟିକରି ପରଲୋକ ଗମନ କରିଛନ୍ତି । ତାଙ୍କର ତିରୋଧାନରେ ଓଡ଼ିଶା ଏକ ମହାନ୍ ଐତିହାସିକ ଏବଂ ପବିତ୍ର ମାନବଙ୍କୁ ହରାଇ ବସିଛି । ତାଙ୍କ ସ୍ୱର୍ଗ ଗମନରେ ଶୂନ୍ୟ ପଡ଼ିଥିବା ସ୍ଥାନ ଅପୂରଣୀୟ ରହିବ । ଏହି ଅବସରରେ ସେହି ଅମର ଆତ୍ମା ପ୍ରତି ମୋର ବିନମ୍ର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

ଭୁବନେଶ୍ୱର
ତା ୨୮ । ୪ । ୮୧

**ଶ୍ରୀ ଅଓ୍ୱଧ ନାରାୟଣ ଭଣ୍ଡାରୀ**
ଶାସନସଚିବ,
ପର୍ଯ୍ୟଟନ, କ୍ରୀଡ଼ା ଓ ସଂସ୍କୃତି, ଓଡ଼ିଶା

ଜଣକ ପରେ ଜଣେ ଗ୍ଲି ଯାଉଛନ୍ତି । ମନେ ହେଉଛି ସ୍ଥାନଟି ଶୂନ୍ୟ ପଡିଗଲା ପରି । କିନ୍ତୁ ବିଧିର ନିୟମାନୁସାରେ କୌଣସି ସ୍ଥାନ ଶୂନ୍ୟ ରହେ ନାହିଁ । ଶୂନ୍ୟସ୍ଥାନ ପୂରଣ କରିବା ନିର୍ଭର କରେ ଯେଉଁମାନେ ରହିଗଲେ ସେମାନଙ୍କ ଉପରେ । କେଦାରନାଥଙ୍କ ମୃତ୍ୟୁ ଖବର ପାଇବାକ୍ଷଣି ମୋ ମନରେ ହଠାତ୍ ଅନେକ ସ୍ମୃତି ଜାଗି ଉଠିଲା । ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ସାଧନ କରିବା ଯେତେବେଳେ ଲକ୍ଷ୍ୟ ଥିଲା, ସେତେବେଳେ ଲକ୍ଷ୍ୟ ସାଧନ ପାଇଁ ଉପଯୁକ୍ତ ଲୋକ ଖୋଜି ଖୋଜି ଆଣିବାକୁ ହୋଇଥିଲା । ଏକ ଆଦିବାସୀ ଗବେଷଣା କେନ୍ଦ୍ର ସେଥିପାଇଁ ପ୍ରସିଦ୍ଧ ଅଧ୍ୟାପକ ଆୟପ୍ପାନଙ୍କୁ ଏହାର ଡିରେକ୍ଟର କରା ହୋଇଥିଲା । ସେ ଥିଲେ ଉତ୍କଳ ବିଶ୍ୱବିଦ୍ୟାଳୟର ଅଧ୍ୟାପକ । ଐତିହାସିକ ଗବେଷଣା ପାଇଁ ଶ୍ରୀ ପରମାନନ୍ଦ ଆଚାର୍ଯ୍ୟ, ଶ୍ରୀ ସତ୍ୟନାରାୟଣ ରାଜଗୁରୁ ଓ ଶ୍ରୀ କେଦାରନାଥ ମହାପାତ୍ର ଆଦିଙ୍କୁ ଅଣାହୋଇଥିଲା । ତତ୍ପୂର୍ବରୁ ଶ୍ରୀ ବିପିନ ବିହାରୀ ନାଥ ଡ଼େପୁଟି ମାଜିଷ୍ଟ୍ରେଟ୍ ପଦ ପାଇଁ ପବ୍ଲିକ୍ ସର୍ଭିସ୍ କମିଶନ ଦ୍ୱାରା ମନୋନୀତ ହୋଇଥିଲେ । ମାତ୍ର ତାଙ୍କର ଶିକ୍ଷାଗତ ଯୋଗ୍ୟତା ବିଚାର କରି ତାଙ୍କୁ ସେ ପଦରେ ଯୋଗ ନ ଦେଇ ମିଉଜିୟମରେ ଯୋଗ ଦେବା ପାଇଁ ପ୍ରବର୍ତ୍ତାଇଲି ଏବଂ ସେ ସମ୍ମତ ହେଲେ । ସେତେବେଳକାର ଉଦ୍ୟମ ଓ ଉତ୍ସାହ ମନେ ପଡିଲେ ଯୁଗପତ୍ ଆନନ୍ଦ ଓ ଦୁଃଖ ହୁଏ । ଦୁଃଖ ହୁଏ ଏଇଥିପାଇଁ କ୍ରମେ ଲକ୍ଷ୍ୟ ସାଧନ ପାଇଁ ଲୋକ ନିଯୁକ୍ତି କରା ନ ହୋଇ ଲୋକ ନିଯୁକ୍ତି ପରେ ତାଙ୍କ ପାଇଁ ଏକ ଲକ୍ଷ୍ୟ ସ୍ଥିର କରା ହେଉଛି । ଫଳରେ କାର୍ଯ୍ୟର ଗୁରୁତ୍ୱ ହ୍ରାସ ପାଇ ବ୍ୟକ୍ତିଗତ ଗୁରୁତ୍ୱ ବୃଦ୍ଧି ପାଉଛି । ଆଉ ଏକ ଲକ୍ଷଣ ପ୍ରକାଶ ପାଉଛି, ଶାସନ ବିଭାଗ ସବୁ କାର୍ଯ୍ୟରେ ନିଜର କର୍ତ୍ତୃତ୍ୱ ଏପରି ଜାରି କରୁଛି ଯେ ସେଥିରେ ସାଂସ୍କୃତିକ ବା ଗବେଷଣା କାର୍ଯ୍ୟ ସୁଚାରୁ ରୂପେ ପରିଚାଳିତ ହେବାର ସମ୍ଭାବନା କମି କମି ଯାଉଛି । ମୁଁ ଜାଣେ ବିପିନ ବିହାରୀ ନାଥ କି ଦୁଃଖ ଓ ନିର୍ଯ୍ୟାତନାରେ ଦେହ ତ୍ୟାଗ କଲେ ।

ଆଦିବାସୀ ଗବେଷଣା କେନ୍ଦ୍ର କି ଅବହେଳିତ ଅବସ୍ଥାରେ ଅଛି ମୁଁ ଜାଣେ । ସେହିପରି ମ୍ୟୁଜିୟମଟି ମଧ୍ୟ ଏକ ଅସୁସ୍ଥ ବାତାବରଣରେ ତିଷ୍ଠି ରହିଛି । ଏ ସବୁ ସ୍ମୃତି କେଦାର ବାବୁଙ୍କ ମୃତ୍ୟୁର ସମ୍ବାଦ ଶୁଣିବା ମାତ୍ରେ ମନକୁ ହଠାତ୍ ଆସିଲା । କେଦାରବାବୁଙ୍କ ବୈଶିଷ୍ଟ୍ୟ ଥିଲା ସେ ତାଳପତ୍ର ପୋଥି ପଢି ତା'ର ସମ୍ପାଦନା କରି ପାରୁଥିଲେ । ସେ ବହୁ ଗବେଷଣା ପୁସ୍ତକ ପ୍ରକାଶ କରିଛନ୍ତି । ଓଡିଶା ମ୍ୟୁଜିୟମରେ ଯେତେ ପୋଥି ଅଛି ଏପରି ଅନ୍ୟ କୌଣସି ମ୍ୟୁଜିୟମରେ ନାହିଁ । ପୋଥି ସବୁ ପଢି ସେ ସବୁରୁ ଉପାଦାନ ସଂଗ୍ରହ କରି ଆଜିର ଲୋକ ଲୋଚନକୁ ଆଣିବା ଏକ ଦୁରୂହ ବ୍ୟାପାର । କେଦାରବାବୁ ଥିଲେ ଏହି କାର୍ଯ୍ୟର ଦାୟିତ୍ୱରେ । ତାଙ୍କ ପରେ କାର୍ଯ୍ୟଟି କିପରି ହେବ ଏଥିପାଇଁ ଚିନ୍ତା କରିବାକୁ ହେବ । ସ୍ଥାନଟିତ ଖାଲି ହେଲା, ଯେ କୌଣସି ଲୋକଙ୍କୁ ରଖି ସେ ସ୍ଥାନ ପୂରଣ କରିବା ଠିକ୍ ହେବ ନାହିଁ । ଏହିସବୁ ନିଯୁକ୍ତିରେ ଜାଣିବା ଶୁଣିବା ଲୋକଙ୍କ ମତ ନେଲେ ପ୍ରଶାସନିକ ବିଭାଗର ମହତ୍ୱରେ କିଛି ବାଧା ଘଟିବ ନାହିଁ ।

କେଦାରବାବୁ କେବଳ ଯେ ଜଣେ ଗବେଷକ ଥିଲେ ତାହା ନୁହେଁ । ସେ ଭୁବନେଶ୍ୱରର ଏକ ବିଶିଷ୍ଟ ପରିବାରର ମୁଖ୍ୟ ବ୍ୟକ୍ତି ଥିଲେ । ପୁରୁଣା ଭୁବନେଶ୍ୱରର ସେ ଜଣେ ମୁରବି ଥିଲେ । ତାଙ୍କର ଦେହାବସାନ ଆବାଳବୃଦ୍ଧ ବନିତା ସମସ୍ତଙ୍କ ମନରେ ଗଭୀର ଦୁଃଖ ଜାତ କରିଛି । ତାଙ୍କର ଶୋକ ସନ୍ତପ୍ତ ପରିବାରବର୍ଗଙ୍କ ପ୍ରତି- ସମବେଦନା ପ୍ରକାଶ କରିବା ସଙ୍ଗେ ସଙ୍ଗେ ତାଙ୍କ ସ୍ଥାନଟି ପୂରଣ କିପରି ହେବ ତାହାହିଁ ବର୍ତ୍ତମାନ ଚିନ୍ତାର ବିଷୟ ।

ହରେକୃଷ୍ଣ ମହତାବ

ପ୍ରଜାତନ୍ତ୍ର
ତା ୨୨।୪।୧୯୮୧

ଦୈନିକ ସମାଜରୁ ଓଡ଼ିଶାର ପ୍ରଖ୍ୟାତ ପ୍ରତ୍ନତତ୍ତ୍ୱବିତ୍ ତଥା ଗବେଷକ ଶ୍ରୀଯୁକ୍ତ କେଦାରନାଥ ମହାପାତ୍ରଙ୍କ ଆକସ୍ମିକ ପରଲୋକ ଖବର ପାଇ ଅତ୍ୟନ୍ତ ମର୍ମାହତ ହେଲି । ଗତମାସ ୨୩ ତାରିଖରେ କଟକ ଶ୍ରୀରାମଚନ୍ଦ୍ର ଭବନଠାରେ ଓଡ଼ିଆ ପାଠକ ସଂସଦ ପକ୍ଷରୁ ଯେଉଁ ୭ ଜଣ କବି, ସାହିତ୍ୟିକ ଓ କଳାକାରଙ୍କୁ ସମ୍ବର୍ଦ୍ଧନା ପ୍ରଦର୍ଶନ କରାଯାଇ ଉପହାର ଦିଆଯାଇ ଥିଲା, ସେମାନଙ୍କ ମଧ୍ୟରେ କେଦାରନାଥ ବାବୁ ଥିଲେ ଏବଂ ମୋତେ ତାଙ୍କୁ ସମ୍ମାନ ପତ୍ର ଓ ଉପହାର ଦେବାର ମୁଖ୍ୟ ଅତିଥି ରୂପେ ସୁଯୋଗ ମିଳିଥିଲା । ସାତଜଣଙ୍କ ମଧ୍ୟରୁ ସେ ସର୍ବପ୍ରଥମେ ସମ୍ବର୍ଦ୍ଧନାର ଉତ୍ତର ଦେଇ ପ୍ରତ୍ନତତ୍ତ୍ୱ ଗବେଷଣା ଓ ସାହିତ୍ୟ କ୍ଷେତ୍ରରେ ତାଙ୍କ ଅନୁଭୂତି ଏବଂ ସାଧନାର କେତେକ ସୂଚନା ଦେଇଥିଲେ । ଯଦିଓ ତାଙ୍କ ବୟସ ୭୦ ବର୍ଷ ହୋଇଥିଲା ତାଙ୍କ ଚିନ୍ତା ଓ ସ୍ମୃତିଶକ୍ତି ବେଶ୍ ପ୍ରଖର ଥିଲା । ମୁଁ କଳ୍ପନା କରି ନ ଥିଲି ଯେ ଏତେ ନିକଟରେ ସେ ଆମମାନଙ୍କୁ ଛାଡ଼ି ଗଲିଯିବେ । ତାଙ୍କ ବିୟୋଗରେ ଏକ ଅନୁଷ୍ଠାନ ଭାଙ୍ଗି ପଡ଼ିଲା । ସେ ଓଡ଼ିଶା ସଂଗ୍ରହାଳୟର ନିର୍ମାତା କହିଲେ ଚଳେ । ଏଭଳି ଅଧ୍ୟବସାୟୀ, ନିରପେକ୍ଷ ଓ ନିରଳସ ସାଧକ ଓ ସ୍ନେହୀ ବନ୍ଧୁ କ୍ୱଚିତ୍ ଦେଖାଯାନ୍ତି । ଉତ୍କଳର ସାହିତ୍ୟ, ପ୍ରତ୍ନତତ୍ତ୍ୱ ଓ ଇତିହାସ କ୍ଷେତ୍ରରେ ତାଙ୍କ ବିୟୋଗରେ ଏକ ଅପୂରଣୀୟ କ୍ଷତି ଘଟିଲା । ଭୁବନେଶ୍ୱରର ଶ୍ରୀ ଲିଙ୍ଗରାଜ ମନ୍ଦିର ପରି ସେ ଜଣେ ଉଚ୍ଚ କୋଟୀର ପ୍ରତ୍ନତତ୍ତ୍ୱବିତ୍, ଗବେଷକ ଓ ଐତିହାସିକ ରୂପେ ଚିରଦିନ ପାଇଁ ସ୍ମରଣୀୟ ହୋଇ ରହିବେ । ତାଙ୍କ ରଚିତ ଇଂରାଜୀ ଓ ଓଡ଼ିଆ ପୁସ୍ତକାବଳୀ ଅମୂଲ୍ୟ ରତ୍ନ । ତାଙ୍କ ବିୟୋଗରେ ଶୋକ ପ୍ରକାଶ କରି ଓ ତାଙ୍କ ଆତ୍ମୀୟ ସ୍ୱଜନଙ୍କୁ ସମବେଦନା ଜଣାଇ ଆତ୍ମା ସନ୍ତୋଷ ଲାଭକରି ନ ପାରେ, ତାଙ୍କ ସ୍ମୃତିପୂଜା ଉଦ୍ଦେଶ୍ୟରେ କିଛି ସ୍ଥାୟୀ ଅନୁଷ୍ଠାନ ଗଢ଼ିବାକୁ ହେବ । ତାଙ୍କର ଶେଷ ଦର୍ଶନ ମିଳିପାରିଲା ନାହିଁ; ଏହାହିଁ ସବୁଠାରୁ ବଳି ଦୁଃଖ, ତାଙ୍କ ବିୟୋଗରେ ଏତିକି କହିବି—

"ବନ୍ଧୁ ! ତୁ ତ ଅନୁଭବୀ ନୋହୁ<br>ସ୍ନେହଜାତ ସୁଖ ତା ବିଚ୍ଛେଦ ଦୁଃଖ<br>ଯେ ଜାଣେ ସେ ଆସି କହୁ ।"

ନୂଆଦିଲ୍ଲୀ<br>ତା ୨୨ । ୪ ୧୯୮୧

ଡକ୍ଟର ରାଧାନାଥ ରଥ

ବିଶିଷ୍ଟ ଐତିହାସିକ ଓ ପ୍ରତ୍ନତତ୍ତ୍ୱବିତ୍ ଶ୍ରୀ କେଦାରନାଥ ମହାପାତ୍ରଙ୍କ ବିୟୋଗ ସମ୍ବାଦ ପାଇ ମୁଁ ମର୍ମାହତ ହୋଇଛି । ଓଡ଼ିଶା ଇତିହାସରେ ଗବେଷଣା କ୍ଷେତ୍ରରେ ତାଙ୍କର ଯେ ଉଲ୍ଲେଖନୀୟ ଅବଦାନ ରହିଛି, ସେଥିପାଇଁ ସେ ଓଡ଼ିଶାବାସୀଙ୍କ ପାଖରେ ସ୍ମରଣୀୟ ହୋଇ ରହିବେ । ଓଡ଼ିଶା ଇତିହାସର ବହୁ ଗୌରବୋଜ୍ଜ୍ୱଳ ଅଧ୍ୟାୟ ଏ ପର୍ଯ୍ୟନ୍ତ ଉଦ୍‌ଘାଟିତ ହୋଇ ପାରିନାହିଁ । ତା ଉପରେ ଗବେଷଣା କରି ଏ ମହାନ୍ ଐତିହାସିକ ସଂପଦକୁ ଲୋକଲୋଚନକୁ ଆଣିବାକୁ ତାଙ୍କର ସଂକଳ୍ପ ଅପୂର୍ଣ୍ଣ ରହିଗଲା । କାଳର କରାଳ ହାତ ତାଙ୍କୁ ଆମ ପାଖରୁ ଛଡ଼ାଇ ନେଲା । ତାଙ୍କ ବିୟୋଗ ଜନିତ କ୍ଷତି ଓଡ଼ିଶା ପାଇଁ ଅପୂରଣୀୟ ହୋଇ ରହିବ । କେଦାରନାଥ ବାବୁଙ୍କ ଲିଖିତ ଐତିହାସିକ ତଥ୍ୟଗୁଡ଼ିକ ସରକାର ସଂଗ୍ରହ କରି ପ୍ରକାଶ କରିବାର ବ୍ୟବସ୍ଥା କରିବା ପାଇଁ ଅନୁରୋଧ କରୁଛି । ତାଙ୍କ ଆତ୍ମାର ସଦ୍‌ଗତି ହେଉ । ତାଙ୍କର ଶୋକ ସନ୍ତପ୍ତ ପରିବାରଙ୍କୁ ଏ ଦୁଃଖ ସହ୍ୟ କରିବା ପାଇଁ ଭଗବାନ୍ ଧୈର୍ଯ୍ୟ ଓ ଶକ୍ତି ଦିଅନ୍ତୁ ।

ଭୁବନେଶ୍ୱର<br>ତା ୨୧ । ୪ ।୧୯୮୧

ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ

ପ୍ରଖ୍ୟାତ ଐତିହାସିକ, ଗବେଷକ, ପ୍ରତ୍ନତତ୍ତ୍ୱବିତ୍ ତଥା ଶିପାବିତ୍ ଶ୍ରୀ କେଦାରନାଥ ମହାପାତ୍ରଙ୍କ ଅପ୍ରତ୍ୟାଶିତ ତିରୋଧାନରେ ଉତ୍କଳ ପ୍ରଜ୍ଞା ଆକାଶରୁ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ଚିରଦିନ ପାଇଁ ଅସ୍ତମିତ ହେଲା । ଜାତୀୟ ଚିନ୍ତାଧାରା ବ୍ୟତୀତ ମୋ ଦୃଷ୍ଟିରେ ସେ ଜଣେ ଏକନିଷ୍ଠ ସତ୍ୟାନୁସନ୍ଧି ସ୍ୱାଭିମାନୀ ଉତ୍କଳୀୟ ଥିଲେ । ବ୍ୟକ୍ତିଗତ ଭାବେ ତାଙ୍କ ବିୟୋଗରେ ମୋର ଜଣେ ଦୀର୍ଘଦିନର ସହକର୍ମୀଙ୍କୁ ହରାଇବାର ଦୁର୍ଭାଗ୍ୟ ଘଟିଛି । ତୀକ୍ଷ୍ଣ ସ୍ମରଣ ଶକ୍ତି ସଂପନ୍ନ କେଦାରନାଥ ମହାପାତ୍ର ଯେ କେବଳ "ଖୁର୍ଦ୍ଧା ଇତିହାସ "ତୋଷାଳୀର ଇତିହାସ" ପରି ଦୁର୍ଲଭ ଐତିହାସିକ ଗ୍ରନ୍ଥ ଓ ଅନେକ ଐତିହାସିକ ସନ୍ଦର୍ଭ ପାଇଁ ଅମର ହୋଇ ରହିବେ, ତାହା ନୁହେଁ; ପବିତ୍ର ଉତ୍କଳ ଭୂମିର ଅନେକ ପ୍ରାଚୀନ ମନ୍ଦିରର ଜୀର୍ଣ୍ଣ ସଂସ୍କାର ପାଇଁ ସେ ସ୍ମରଣୀୟ ହୋଇ ରହିବେ । ଜୟଦେବଙ୍କ ଲୀଳା ଭୂମି କେନ୍ଦୁବିଲ୍ୱ (କେନ୍ଦୁଳି ଦେଉଳ) ଠାରୁ ଭୁବନେଶ୍ୱରର ଅନେକ ମନ୍ଦିର, ଗଞ୍ଜାମର ପୋତାଗଡ଼ଠାରୁ କୋଣାର୍କର ରାମଚଣ୍ଡୀ ମନ୍ଦିର ପର୍ଯ୍ୟନ୍ତ ସବୁରି ଜୀର୍ଣ୍ଣ ସଂସ୍କାରରେ ତାଙ୍କର ଚିନ୍ତାଧାରାର ସ୍ପର୍ଶ ଅଛି । ଐତିହାସିକ ସ୍ମୃତିର ଜୀର୍ଣ୍ଣ ସଂସ୍କାରକୁ ସେ ଯେମିତି ଜୀବନର ବ୍ରତ ବୋଲି ଧରି ନେଇଥିଲେ ।

ପୁଣ୍ୟଜନ୍ମ ଭୂମି ପୁଣ୍ୟ ଦେବାଳୟ,<br>
ଉଦ୍ଧରିବା ପାଇଁ କଲେ ତନୁ କ୍ଷୟ ।

ଉତକଳମଣିଙ୍କର ଏହି ବାଣୀ ସେ ମର୍ମେ ମର୍ମେ ଉପଲବ୍ଧି କରିଥିଲେ ।

ଭୁବନେଶ୍ୱର ରାଜଧାନୀ ଭାବରେ ନିରୂପିତ ହେବା ପୂର୍ବରୁ ଏହାର ଉନ୍ନତି କଳ୍ପେ ଯେତେ ଯେତେ ଯୋଜନା କଳ୍ପନା କରାଯାଇଥିଲା ସେ ସମସ୍ତରେ ସେ ସକ୍ରିୟ ଅଂଶ ଗ୍ରହଣ କରିବାର ସ୍ମୃତି ଏବେ ମଧ୍ୟ ମାନସ ପଟରୁ ଲୀନ ହୋଇ ନାହିଁ । ତାଙ୍କର ଦୀର୍ଘ କର୍ମମୟ ଜୀବନର ଅବସାନରେ ଉତ୍କଳମାତାର ଯେଉଁ ଅପୂରଣୀୟ କ୍ଷତି ହେଲା, ତାହା ବହୁଦିନ ପର୍ଯ୍ୟନ୍ତ ଚିନ୍ତାଶୀଳ ବ୍ୟକ୍ତିମାନେ ମର୍ମେ ମର୍ମେ ଅନୁଭବ କରିବେ । କେଦାରନାଥ ମହାପାତ୍ରଙ୍କ ପବିତ୍ରଆତ୍ମା ଶୁଦ୍ଧ କର୍ମକାନ୍ତି ପରେ ଶାଶ୍ୱତ ଶାନ୍ତି ଲଭକରୁ ଏହାହିଁ ଭଗବତ୍ ଚରଣରେ ମୋର ନିବେଦନ ।

**ଶ୍ରୀ ସତ୍ୟପ୍ରିୟ ମହାନ୍ତି**

ଭୁବନେଶ୍ୱର<br>
ତା ୨୫ । ୪ । ୧୯୮୧

କେଦାରବାବୁ ଚାଲିଗଲେ, ଗୋଟିଏ କର୍ମମୟ ଜୀବନର ଅବସାନ ଘଟିଲା । ଶିକ୍ଷାଦାନ, ଶିକ୍ଷାଲାଭ ତାଙ୍କର ଅସ୍ଥିମଜ୍ଜାଗତ ହୋଇଯାଇଥିଲା । ଜରା ତାଙ୍କ ଶିକ୍ଷା ଗବେଷଣାରେ କୌଣସି ବାଧା ସୃଷ୍ଟି କରି ନଥିଲା । ଏ ମୃତ୍ୟୁ ମଧ୍ୟ ତାଙ୍କୁ ଶିକ୍ଷାଦାନରୁ ବଞ୍ଚିତ କରିବ ନାହିଁ । ଓଡ଼ିଆ ଓ ଇଂରାଜୀ ଭାଷାରେ ରଚିତ ତାଙ୍କର ପୁସ୍ତକ ଓଡ଼ିଶା ଇତିହାସର ଛାତ୍ରମାନଙ୍କୁ ଶିକ୍ଷାଦାନ କରିଚାଲିବ । ଓଡ଼ିଶାର ଲୁପ୍ତ ଗୌରବକୁ ଲୋକ ଲୋଚନକୁ ଆଣିବାରେ ତାଙ୍କର ଦାନ ଚିର ସ୍ମରଣୀୟ ।

ତାଙ୍କ ସହିତ ମୋର ଘନିଷ୍ଠତା ବହୁ ବର୍ଷର । ତାଙ୍କର ସରଳ ଅମାୟିକ ବ୍ୟବହାର ଯୋଗୁଁ ସେ ଛାତ୍ର ମହଲରେ ଆଦୃତ ଥିଲେ । ସହକର୍ମୀ ଓ ବନ୍ଧୁମାନଙ୍କର ଶ୍ରଦ୍ଧାର ପାତ୍ର ଥିଲେ । ବୟସର ରେଖା ତାଙ୍କ ଉପରେ କୌଣସି ପ୍ରଭାବ ପକାଇ ନ ଥିଲା । କିଛିଦିନ ପୂର୍ବେ ତାଙ୍କ ସହ ସାକ୍ଷାତ ସମୟରେ ଚିରାଚରିତ ରୀତିରେ ସେ ମୋ ସହିତ ଆଳାପ କରୁଥିଲେ । ତାଙ୍କର ଏ ଅଚାନକ ମୃତ୍ୟୁ ଓଡ଼ିଶାର ଇତିହାସ ଗବେଷଣା କ୍ଷେତ୍ରରେ ଅପୂରଣୀୟ ରହିବ ।

ତାଙ୍କର ଅମର ଆତ୍ମାର ସଦ୍‌ଗତି କାମନା କରି ଭଗବାନଙ୍କୁ ପ୍ରାର୍ଥନା କରିବା ସଙ୍ଗେ ସଙ୍ଗେ ଶୋକାକୁଳ ପରିବାର ବର୍ଗଙ୍କୁ ମୋର ଗଭୀରତମ ସମବେଦନା ଜ୍ଞାପନ କରୁଛି ।

**ଶ୍ରୀ ହର ପ୍ରସନ୍ନ ମିଶ୍ର**

ଭୁବନେଶ୍ୱର<br>
ତା ୨୫ । ୪ । ୧୯୮୧

ଦୈନିକ ସମାଜରୁ ଓଡ଼ିଶାର ପ୍ରଖ୍ୟାତ ପ୍ରତ୍ନତତ୍ତ୍ୱବିତ୍ ତଥା ଗବେଷକ ଶ୍ରୀଯୁକ୍ତ କେଦାରନାଥ ମହାପାତ୍ରଙ୍କ ଆକସ୍ମିକ ପରଲୋକ ଖବର ପାଇ ଅତ୍ୟନ୍ତ ମର୍ମାହତ ହେଲି । ଗତମାସ ୨୩ ତାରିଖରେ କଟକ ଶ୍ରୀରାମଚନ୍ଦ୍ର ଭବନଠାରେ ଓଡ଼ିଆ ପାଠକ ସଂସଦ ପକ୍ଷରୁ ଯେଉଁ ୭ ଜଣ କବି, ସାହିତ୍ୟିକ ଓ କଳାକାରଙ୍କୁ ସମ୍ବର୍ଦ୍ଧନା ପ୍ରଦର୍ଶନ କରାଯାଇ ଉପହାର ଦିଆଯାଇ ଥିଲା, ସେମାନଙ୍କ ମଧ୍ୟରେ କେଦାରନାଥ ବାବୁ ଥିଲେ ଏବଂ ମୋତେ ତାଙ୍କୁ ସମ୍ମାନ ପତ୍ର ଓ ଉପହାର ଦେବାର ମୁଖ୍ୟ ଅତିଥି ରୂପେ ସୁଯୋଗ ମିଳିଥିଲା । ସାତଜଣଙ୍କ ମଧ୍ୟରୁ ସେ ସର୍ବପ୍ରଥମେ ସମ୍ବର୍ଦ୍ଧନାର ଉତ୍ତର ଦେଇ ପ୍ରତ୍ନତତ୍ତ୍ୱ ଗବେଷଣା ଓ ସାହିତ୍ୟ କ୍ଷେତ୍ରରେ ତାଙ୍କ ଅନୁଭୂତି ଏବଂ ସାଧନାର କେତେକ ସୂଚନା ଦେଇଥିଲେ । ଯଦିଓ ତାଙ୍କ ବୟସ ୭୦ ବର୍ଷ ହୋଇଥିଲା ତାଙ୍କ ଚିନ୍ତା ଓ ସ୍ମୃତିଶକ୍ତି ବେଶ୍ ପ୍ରଖର ଥିଲା । ମୁଁ କଳ୍ପନା କରି ନ ଥିଲି ଯେ ଏତେ ନିକଟରେ ସେ ଆମମାନଙ୍କୁ ଛାଡ଼ି ଚାଲିଯିବେ । ତାଙ୍କ ବିୟୋଗରେ ଏକ ଅନୁଷ୍ଠାନ ଭାଙ୍ଗି ପଡ଼ିଲା । ସେ ଓଡ଼ିଶା ସଂଗ୍ରହାଳୟର ନିର୍ମାତା କହିଲେ ଚଳେ । ଏଭଳି ଅଧ୍ୟବସାୟୀ, ନିରପେକ୍ଷ ଓ ନିରଳସ ସାଧକ ଓ ସ୍ନେହୀ ବନ୍ଧୁ କ୍ୱଚିତ୍ ଦେଖାଯାନ୍ତି । ଉତ୍କଳର ସାହିତ୍ୟ, ପ୍ରତ୍ନତତ୍ତ୍ୱ ଓ ଇତିହାସ କ୍ଷେତ୍ରରେ ତାଙ୍କ ବିୟୋଗରେ ଏକ ଅପୂରଣୀୟ କ୍ଷତି ଘଟିଲା । ଭୁବନେଶ୍ୱରର ଶ୍ରୀ ଲିଙ୍ଗରାଜ ମନ୍ଦିର ପରି ସେ ଜଣେ ଉଚ୍ଚ କୋଟୀର ପ୍ରତ୍ନତତ୍ତ୍ୱବିତ୍, ଗବେଷକ ଓ ଐତିହାସିକ ରୂପେ ଚିରଦିନ ପାଇଁ ସ୍ମରଣୀୟ ହୋଇ ରହିବେ । ତାଙ୍କ ରଚିତ ଇଂରାଜୀ ଓ ଓଡ଼ିଆ ପୁସ୍ତକାବଳୀ ଅମୂଲ୍ୟ ରତ୍ନ । ତାଙ୍କ ବିୟୋଗରେ ଶୋକ ପ୍ରକାଶ କରି ଓ ତାଙ୍କ ଆତ୍ମୀୟ ସ୍ୱଜନଙ୍କୁ ସମବେଦନା ଜଣାଇ ଆତ୍ମା ସନ୍ତୋଷ ଲାଭକରି ନ ପାରେ, ତାଙ୍କ ସ୍ମୃତିପୂଜା ଉଦ୍ଦେଶ୍ୟରେ କିଛି ସ୍ଥାୟୀ ଅନୁଷ୍ଠାନ ଗଢିବାକୁ ହେବ । ତାଙ୍କର ଶେଷ ଦର୍ଶନ ମିଳିପାରିଲା ନାହିଁ; ଏହାହିଁ ସବୁଠାରୁ ବଳି ଦୁଃଖ, ତାଙ୍କ ବିୟୋଗରେ ଏତିକି କହିବି—

"ବନ୍ଧୁ ! ତୁ ତ ଅନୁଭବୀ ନୋହୁ
ସ୍ନେହଜାତ ସୁଖ ତା ବିଚ୍ଛେଦ ଦୁଃଖ
ଯେ ଜାଣେ ସେ ଆସି କହୁ ।"

ନୂଆଦିଲ୍ଲୀ
ତା ୨୨ । ୪ ୧୯୮୧

ଡକ୍ଟର ରାଧାନାଥ ରଥ

ବିଶିଷ୍ଟ ଐତିହାସିକ ଓ ପ୍ରତ୍ନତତ୍ତ୍ୱବିତ୍ ଶ୍ରୀ କେଦାରନାଥ ମହାପାତ୍ରଙ୍କ ବିୟୋଗ ସମ୍ବାଦ ପାଇ ମୁଁ ମର୍ମାହତ ହୋଇଛି । ଓଡ଼ିଶା ଇତିହାସରେ ଗବେଷଣା କ୍ଷେତ୍ରରେ ତାଙ୍କର ଯେ ଉଲ୍ଲେଖନୀୟ ଅବଦାନ ରହିଛି, ସେଥିପାଇଁ ସେ ଓଡ଼ିଶାବାସୀଙ୍କ ପାଖରେ ସ୍ମରଣୀୟ ହୋଇ ରହିବେ । ଓଡ଼ିଶା ଇତିହାସର ବହୁ ଗୌରବୋଜ୍ଜ୍ୱଳ ଅଧ୍ୟାୟ ଏ ପର୍ଯ୍ୟନ୍ତ ଉଦ୍‌ଘାଟିତ ହୋଇ ପାରିନାହିଁ । ତା ଉପରେ ଗବେଷଣା କରି ଏ ମହାନ୍ ଐତିହାସିକ ସଂପଦକୁ ଲୋକ-ଲୋଚନକୁ ଆଣିବାକୁ ତାଙ୍କର ସଂକଳ୍ପ ଅପୂର୍ଣ୍ଣ ରହିଗଲା । କାଳର କରାଳ ହାତ ତାଙ୍କୁ ଆମ ପାଖରୁ ଛଡ଼ାଇ ନେଲା । ତାଙ୍କ ବିୟୋଗ ଜନିତ କ୍ଷତି ଓଡ଼ିଶା ପାଇଁ ଅପୂରଣୀୟ ହୋଇ ରହିବ । କେଦାରନାଥ ବାବୁଙ୍କ ଲିଖିତ ଐତିହାସିକ ତଥ୍ୟ-ଗୁଡ଼ିକ ସରକାର ସଂଗ୍ରହ କରି ପ୍ରକାଶ କରିବାର ବ୍ୟବସ୍ଥା କରିବା ପାଇଁ ଅନୁରୋଧ କରୁଛି । ତାଙ୍କ ଆତ୍ମାର ସଦ୍‌ଗତି ହେଉ । ତାଙ୍କର ଶୋକ ସନ୍ତପ୍ତ ପରିବାରଙ୍କୁ ଏ ଦୁଃଖ ସହ୍ୟ କରିବା ପାଇଁ ଭଗବାନ୍ ଧୈର୍ଯ୍ୟ ଓ ଶକ୍ତି ଦିଅନ୍ତୁ ।

ଭୁବନେଶ୍ୱର
ତା ୨୧ । ୪ ।୧୯୮୧

ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ

ପ୍ରଖ୍ୟାତ ଐତିହାସିକ, ଗବେଷକ, ପ୍ରତ୍ନତତ୍ତ୍ୱବିତ୍ ତଥା ଶିକ୍ଷାବିତ୍ ଶ୍ରୀ କେଦାରନାଥ ମହାପାତ୍ରଙ୍କ ଅପ୍ରତ୍ୟାଶିତ ତିରୋଧାନରେ ଉତ୍କଳ ପ୍ରଜ୍ଞା ଆକାଶରୁ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ଚିରଦିନ ପାଇଁ ଅସ୍ତମିତ ହେଲା । ଜାତୀୟ ଚିନ୍ତାଧାରା ବ୍ୟତୀତ ମୋ ଦୃଷ୍ଟିରେ ସେ ଜଣେ ଏକନିଷ୍ଠ ସତ୍ୟାନୁସନ୍ଧି ସ୍ୱାଭିମାନୀ ଉତ୍କଳୀୟ ଥିଲେ । ବ୍ୟକ୍ତିଗତ ଭାବେ ତାଙ୍କ ବିୟୋଗରେ ମୋର ଜଣେ ଦୀର୍ଘଦିନର ସହକର୍ମୀଙ୍କୁ ହରାଇବାର ଦୁର୍ଭାଗ୍ୟ ଘଟିଛି । ତୀକ୍ଷ୍ଣ ସ୍ମରଣ ଶକ୍ତି ସଂପନ୍ନ କେଦାରନାଥ ମହାପାତ୍ର ଯେ କେବଳ "ଖୁର୍ଦ୍ଧା ଇତିହାସ "ତୋଷାଳୀର ଇତିହାସ" ପରି ଦୁର୍ଲଭ ଐତିହାସିକ ଗ୍ରନ୍ଥ ଓ ଅନେକ ଐତିହାସିକ ସନ୍ଦର୍ଭ ପାଇଁ ଅମର ହୋଇ ରହିବେ, ତାହା ନୁହେଁ; ପବିତ୍ର ଉତ୍କଳ ଭୂମିର ଅନେକ ପ୍ରାଚୀନ ମନ୍ଦିରର ଜୀର୍ଣ୍ଣ ସଂସ୍କାର ପାଇଁ ସେ ସ୍ମରଣୀୟ ହୋଇ ରହିବେ । ଜୟଦେବଙ୍କ ଲୀଳା ଭୂମି କେନ୍ଦୁବିଲ୍ୱ (କେନ୍ଦୁଳି ଦେଉଳ) ଠାରୁ ଭୁବନେଶ୍ୱରର ଅନେକ ମନ୍ଦିର, ଗଞ୍ଜାମର ପୋତାଗଡ଼ଠାରୁ କୋଣାର୍କର ରାମଚଣ୍ଡୀ ମନ୍ଦିର ପର୍ଯ୍ୟନ୍ତ ସବୁରି ଜୀର୍ଣ୍ଣ ସଂସ୍କାରରେ ତାଙ୍କର ଚିନ୍ତାଧାରାର ସ୍ପର୍ଶ ଅଛି । ଐତିହାସିକ ସ୍ମୃତିର ଜୀର୍ଣ୍ଣ ସଂସ୍କାରକୁ ସେ ଯେମିତି ଜୀବନର ବ୍ରତ ବୋଲି ଧରି ନେଇଥିଲେ ।

ପୁଣ୍ୟଜନ୍ମ ଭୂମି ପୁଣ୍ୟ ଦେବାଳୟ,
ଉଦ୍ଧରିବା ପାଇଁ କଲେ ତନୁ କ୍ଷୟ ।

ଉତ୍କଳମଣିଙ୍କର ଏହି ବାଣୀ ସେ ମର୍ମେ ମର୍ମେ ଉପଲବ୍ଧି କରିଥିଲେ ।

ଭୁବନେଶ୍ୱର ରାଜଧାନୀ ଭାବରେ ନିରୂପିତ ହେବା ପୂର୍ବରୁ ଏହାର ଉନ୍ନତି କଳ୍ପେ ଯେତେ ଯେତେ ଯୋଜନା କଳ୍ପନା କରାଯାଇଥିଲା ସେ ସମସ୍ତରେ ସେ ସକ୍ରିୟ ଅଂଶ ଗ୍ରହଣ କରିବାର ସ୍ମୃତି ଏବେ ମଧ୍ୟ ମାନସ ପଟରୁ ଲୀନ ହୋଇ ନାହିଁ । ତାଙ୍କର ଦୀର୍ଘ କର୍ମମୟ ଜୀବନର ଅବସାନରେ ଉତ୍କଳମାତାର ଯେଉଁ ଅପୂରଣୀୟ କ୍ଷତି ହେଲା, ତାହା ବହୁଦିନ ପର୍ଯ୍ୟନ୍ତ ଚିନ୍ତାଶୀଳ ବ୍ୟକ୍ତିମାନେ ମର୍ମେ ମର୍ମେ ଅନୁଭବ କରିବେ । କେଦାରନାଥ ମହାପାତ୍ରଙ୍କ ପବିତ୍ରଆତ୍ମା ଶୁଦ୍ଧ କର୍ମକ୍ଳାନ୍ତି ପରେ ଶାଶ୍ୱତ ଶାନ୍ତି ଲାଭକରୁ ଏହାହିଁ ଭଗବତ୍ ଚରଣରେ ମୋର ନିବେଦନ ।

**ଶ୍ରୀ ସତ୍ୟପ୍ରିୟ ମହାନ୍ତି**

ଭୁବନେଶ୍ୱର
ତା ୨୫ । ୪ । ୧୯୮୧

କେଦାରବାବୁ ଚାଲିଗଲେ, ଗୋଟିଏ କର୍ମମୟ ଜୀବନର ଅବସାନ ଘଟିଲା । ଶିକ୍ଷାଦାନ, ଶିକ୍ଷାଲାଭ ତାଙ୍କର ଅସ୍ଥି-ମଜାଗତ ହୋଇଯାଇଥିଲା । ଜରା ତାଙ୍କ ଶିକ୍ଷା ଗବେଷଣାରେ କୌଣସି ବାଧା ସୃଷ୍ଟି କରି ନଥିଲା । ଏ ମୃତ୍ୟୁ ମଧ୍ୟ ତାଙ୍କୁ ଶିକ୍ଷାଦାନରୁ ବଞ୍ଚିତ କରିବ ନାହିଁ । ଓଡ଼ିଆ ଓ ଇଂରାଜୀ ଭାଷାରେ ରଚିତ ତାଙ୍କର ପୁସ୍ତକ ଓଡ଼ିଶା ଇତିହାସର ଛାତ୍ରମାନଙ୍କୁ ଶିକ୍ଷାଦାନ କରିଚାଲିବ । ଓଡ଼ିଶାର ଲୁପ୍ତ ଗୌରବକୁ ଲୋକ ଲୋଚନକୁ ଆଣିବାରେ ତାଙ୍କର ଦାନ ଚିର ସ୍ମରଣୀୟ ।

ତାଙ୍କ ସହିତ ମୋର ଘନିଷ୍ଠତା ବହୁ ବର୍ଷର । ତାଙ୍କର ସରଳ ଅମାୟିକ ବ୍ୟବହାର ଯୋଗୁଁ ସେ ଛାତ୍ର ମହଲରେ ଆଦୃତ ଥିଲେ । ସହକର୍ମୀ ଓ ବନ୍ଧୁମାନଙ୍କର ଶ୍ରଦ୍ଧାର ପାତ୍ର ଥିଲେ । ବୟସର ରେଖା ତାଙ୍କ ଉପରେ କୌଣସି ପ୍ରଭାବ ପକାଇ ନ ଥିଲା । କିଛିଦିନ ପୂର୍ବେ ତାଙ୍କ ସହ ସାକ୍ଷାତ ସମୟରେ ଚିରାଚରିତ ରୀତିରେ ସେ ମୋ ସହିତ ଆଳାପ କରୁଥିଲେ । ତାଙ୍କର ଏ ଅଗ୍ରନକ ମୃତ୍ୟୁ ଓଡ଼ିଶାର ଇତିହାସ ଗବେଷଣା କ୍ଷେତ୍ରରେ ଅପୂରଣୀୟ ରହିବ ।

ତାଙ୍କର ଅମର ଆତ୍ମାର ସଦ୍‌ଗତି କାମନା କରି ଭଗବାନଙ୍କୁ ପ୍ରାର୍ଥନା କରିବା ସଙ୍ଗେ ସଙ୍ଗେ ଶୋକାକୁଳ ପରିବାର ବର୍ଗଙ୍କୁ ମୋର ଗଭୀରତମ ସମବେଦନା ଜ୍ଞାପନ କରୁଛି ।

**ଶ୍ରୀ ହର ପ୍ରସନ୍ନ ମିଶ୍ର**

ଭୁବନେଶ୍ୱର
ତା ୨୫ । ୪ । ୧୯୮୧

ମୋର ପରମ ସୁହୃଦ୍ ବନ୍ଧୁ ଓ ସହକର୍ମୀ ସହଧର୍ମୀ କେଦାର ବାବୁ ହଠାତ୍ ଗଲିଗଲେ । ଏ ଦାରୁଣ ସମ୍ବାଦ ପାଇଲାକ୍ଷଣି ମୋ ମନ କିଛି ସମୟ ନିର୍ବେଦ ହୋଇଗଲା । ମୁଁ ପ୍ରଥମେ ଏ କଥା ବିଶ୍ୱାସ କରିପାରିଲି ନାହିଁ । କିନ୍ତୁ କାଳ ସମସ୍ତଙ୍କୁ ଯେପରି ଶାନ୍ତି କୋଳକୁ ଟାଣି ନେଇ ସଂସାର ଜଞ୍ଜାଳରୁ ମୁକ୍ତି ଦିଏ, ଆଜି ଓଡ଼ିଶାର ଗୋଟିଏ ନିଷ୍ଠାପର କର୍ମମୟ ଜୀବନକୁ ଚିର ବିଶ୍ରାମ ଦେଇଛି । ତେବେ ଯେଉଁ ସମସ୍ତ ମହତ୍ କର୍ମରେ ସେ ହାତ ଦେଇଥିଲେ ସେଥିରୁ ବହୁତ କିଛି ଅପୂର୍ଣ୍ଣ ରହିଗଲା, ଏହାହିଁ ଦୁଃଖ ।

ଭଗବାନ ଶ୍ରୀକୃଷ୍ଣ କହିଥିଲେ —

ଜାତସ୍ୟ ହି ଧ୍ରୁବ ମୃତ୍ୟୁଃ

ଧ୍ରୁବଂ ଜନ୍ମ ମୃତସ୍ୟ ଚ ।

ତସ୍ମାଦ୍‌ପରିହାର୍ଯ୍ୟାର୍ଥେ

ନ ତ୍ୱଂ ଶୋଚିତୁମର୍ହସି ।

ଏହି ମହାବାକ୍ୟହିଁ ଆଜିର ଏହି ଦାରୁଣ ଆଘାତରେ ଅମୃତ ପ୍ରଲେପ ।

କେଦାର ବାବୁଙ୍କ ପରି ଜଣେ ନିଷ୍ଠାପର ଐତିହାସିକ ଓଡ଼ିଶାରେ ଦୁର୍ଲଭ କହିଲେ ଚଳେ । ତାଙ୍କ ଅଧ୍ୟବସାୟ ଗଭୀର ଅନୁଶୀଳନ ପ୍ରଚେଷ୍ଟା, ତୀକ୍ଷ୍ଣ ସ୍ମରଣ ଶକ୍ତି, ଜାତୀୟ ଅନୁରାଗ, ଆଧ୍ୟାତ୍ମିକ ଚେତନା, ସାହିତ୍ୟ ଓ ଇତିହାସରେ ଗଭୀର ଜ୍ଞାନ, ସରଳ ବ୍ୟବହାର ଏବଂ ବନ୍ଧୁପ୍ରୀତି, ଏ ସମସ୍ତ ଉତ୍ତମ ଗୁଣ ତାଙ୍କୁ ଓଡ଼ିଶାରେ ଅମର କରି ରଖିବ । ଶେଷ ଜୀବନରେ ମୋ ସଙ୍ଗେ ସେ ସହଯୋଗ କରି ଓଡ଼ିଶାର ଏକ ପୂର୍ଣ୍ଣାଙ୍ଗ ଇତିହାସ ଲେଖିବାକୁ ଓଡ଼ିଶା ସାଂସ୍କୃତିକ ବିଭାଗ ପକ୍ଷରୁ ଗୋଟିଏ ପ୍ରକଳ୍ପ ବିଚାରାଧୀନ ଥିଲା । କିନ୍ତୁ ଅପ୍ରତ୍ୟାଶିତ ଭାବେ ମୋର ସେହି ସହକର୍ମୀଙ୍କୁ ଆଜି ହରାଇ ଦେଇ ହତାଶାର କୁହେଳିକା ଭିତରେ ମୁଁ ବୁଡ଼ିଯାଇଛି । ମୋଠାରୁ ବୟସରେ ସେ ୮ । ୯ ବର୍ଷ ସାନ ହୋଇ କନିଷ୍ଠ ଭ୍ରାତା ପରି ସବୁବେଳେ ମୋତେ ସମ୍ମାନ ଦେଖାଉଥିଲେ । ତାଙ୍କୁ ସ୍ୱର୍ଗୀୟ ପରମାନନ୍ଦ ଆଚାର୍ଯ୍ୟ ଯେଉଁ ସ୍ନେହ ଶ୍ରଦ୍ଧା କରୁଥିଲେ, ସେପରି ତାଙ୍କର ଗୁଣରାଶି ମୋତେ ଅଭିଭୂତ କରିଥିଲା ।

ଓଡ଼ିଶାରେ ସେ ଗୋଟିଏ ଜ୍ୱଳନ୍ତ ପ୍ରତିଭା ଥିଲେ ଏବଂ ଅଳ୍ପକାଳ ପରେ ଓଡ଼ିଶାର ସମ୍ପୂର୍ଣ୍ଣ ଇତିହାସରେ ତାଙ୍କ ପ୍ରତିଭା ଅଧିକ ଆଲୋକ ବିକୀରଣ କରିଥା'ନ୍ତା । କିନ୍ତୁ ତାହା ଅପୂର୍ଣ୍ଣ ରହିଲା ।

ନିଷ୍ଠୁର କାଳ — ଓଡ଼ିଶାର ଏକ ସୁଯୋଗ୍ୟ ପୁତ୍ରକୁ ହରଣ କରି ଆଜି ସାହିତ୍ୟ ଜଗତରେ ଯେଉଁ କ୍ଷତି ସାଧନ କଲା ତାହା ଅପୂରଣୀୟ ରହିବ ।

ପ୍ରଭୁ ଶ୍ରୀ ଜଗନ୍ନାଥ ତାଙ୍କ ଆତ୍ମାକୁ ସଦ୍‌ଗତି ଦିଅନ୍ତୁ । ତାଙ୍କ ପରିବାରକୁ କେଉଁ ଭାଷାରେ ସାନ୍ତ୍ୱନା ଦେବି ମୁଁ ଖୋଜି ପାଉ ନାହିଁ ।

ଶ୍ରୀ ସତ୍ୟନାରାୟଣ ରାଜଗୁରୁ

ପାରଳାଖେମୁଣ୍ଡି

ତା ୨୪ । ୪ । ୮୯



ଅନ୍ତିମ ଶଯ୍ୟାରେ  କେଦାରନାଥ



ଉତ୍କଳ ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗ  ମୁଖ୍ୟ ଅଧ୍ୟାପକ
ପ୍ରମୁଖଙ୍କ ଶ୍ରଦ୍ଧାଞ୍ଜଳି ଜ୍ଞାପନ ।



ଡକ୍‌ଟର ହରେକୃଷ୍ଣ ମହତାବଙ୍କ ଶ୍ରଦ୍ଧାଞ୍ଜଳି ଜ୍ଞାପନ



ମୁଖ୍ୟ ଶାସନସଚିବ ଅତିରିକ୍ତ ମୁଖ୍ୟ ଶାସନସଚିବ, ଶିକ୍ଷା ଓ ଯୁବ କଲ୍ୟାଣ ବିଭାଗ ଶାସନସଚିବ, ପର୍ଯ୍ୟଟନ, କ୍ରୀଡ଼ା ଓ ସଂସ୍କୃତି ନିର୍ଦ୍ଦେଶକ ପ୍ରମୁଖଙ୍କ ଶ୍ରଦ୍ଧାଞ୍ଜଳି ଜ୍ଞାପନ ।

କେଦାରବାବୁଙ୍କ ଶବ ଉପରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ ପୁଷ୍ପମାଲ୍ୟ ଅର୍ପଣ କରିବା ପରେ ।





ପରିବାରବର୍ଗଙ୍କ ମଧ୍ୟରେ କେଦାରବାବୁଙ୍କ ମର ଶରୀର ।



ରାଜ୍ୟ ସଂଗ୍ରହାଳୟ ଅଧୀକ୍ଷକ ତଥା ଆତ୍ମୀୟବର୍ଗଙ୍କ
ଶ୍ରଦ୍ଧାଞ୍ଜଳି ଜ୍ଞାପନ ।

ଶ୍ମଶାନରେ ଜନସମାଗମ



# Contents

# KEDARNATH MAHAPATRA
# Life adn Works

Dr. H. C. DAS

## LIFE SKETCH

Born in 1911 of a respectable Brahmin families of Bhubaneswar, a place of archaeological and historical importance and the present capital of the State of Orissa. Kedar Nath Mahapatra had his schooling in Bhubaneswar M. E. School and Khurda High School and he graduated with Honours in History from Ravenshaw College in 1933. On completion of training in education he started his career of a teacher serving in different High Schools, such as Banki High School, Khurda High School, Sambalpur Zilla School, Puri Zilla School, Victoria High School and P. M. Academy, Cuttack during the period from 1935 to 1943 as a very successful teacher. During his career of teachership he felt the necessity of standard text-books of history in Primary and High School stages and devoted himself in writing Uchha Prathamika Bharata Itihasa and England Itihasa which continued as the text books till 1972.

From 1943 his devoted career took a different turn. His association with the Maharaja of Kalahandi opened a new vista to establish himself as an archaeologist and historian. He was appointed as the archaeologist of the then Kalahandi State and continued there till 1950. His merit and creative abilities got opportunities to flower up under the royal patronage. He proved his capability in archaeological exploration, excavation and research. The discovery of archaeological sites at Belkhandi on the confluence of Tel and Utai rivers which retrieved through excavation the archaeological treasures of early Somavamsi and publication of Kalinga Historical Research Journal and Publication of different papers on history and archaeology and establishment of site museum at Belkhandi brought him to lime light

In consideration of his merit he was entrusted with the manuscript section of the Provincial museum (the present Orissa State Museum) and continued there till 1962 when he was elevated to the position of Superintendent of Research and museum. It was under his stewardship the Orissa State museum assumed the status of a multipurpose State Museum with the addition of Anthropology and Natural history sections and a series of publications like descriptive catalogues of sanskrit manuscripts (in four volumes) and edited volumes of rare palm leaf manuscripts. His papers and books highlighted the educational and cultural activities of the museum. Thus the Orissa State museum owe greatly to Kedar Nath Mahapatra for his devoted services and pioneering activities in furthering the cause of museology, history and archaeology. On bifurcation of archaeology from the museum in 1965 he became the Superintendent of archaeology. Here his erudition and scholasticism in the discipline of archaeology found fruition. Most of the archaeological excavations, conservation of temples, survey and explorations of sites so far executed in Orissa are

evidently due to him. He retired from the post of Superintendent of archaeology in 1971 but continued to remain in active association with various activities of the museum, archives, archaeology and the Orissa Sahitya Akademi till his sudden demise on the 20th April 1981. Thus is ended the eventful life of the most colourful personality closing a glorious chapter in indological studies of Orissa. Love of devotion to and abiding interest in works with unshakable serenity and unfailing self-confidence kept him alive. He had many schemes in mind but the icy hands of death put a stop leaving the unfinished works in the hands of his successors. Death untimely relieved of duty entrusted to him for the service to a nation.

## HIS WORKS

The momentous and eventful career of Kedarnath Mohapatra, was one of the continuous and devoted service to Orissan history and culture as teacher historian, archaeologist, Museologist and litteratuer for more than 46 years. Author of numerous papers covering a wide range of Subjects like Orissan archaeology, Political history, Sanskrit Poets and Scholars of Orissa, Particularly those whose contributions were shrowded in oblivion, the descriptive catalogues of Sanskrit manuscripts, a novel venture to high light the rare and unpublished manuscripts, in the context of historical sequence etc. Kedar babu specialised in everything bringing about a blend of archaeology, numismatic, epigraphy and literature in the study of history. All these papers and some of his important books entitled descriptive catalogues of Sanskrit manuscripts of Orissa in four volumes, Shree Kharavela, Tosali Itihasa, Khurda Itihasa, Shree Jayadeva O Gita govinda, report on the archological excavation at Belkhandi and Jagannath temples in Eastern India supplemented by several edited volumes are together not only a unique contribution to indological studies but also a permanent testimony to his scholarly brilliance and erudition. His interdisciplinary approach to history in accountability of details of facts made him great a historian. Each of his papers and each of his books relate with facts in details in ornamental language indicates his command over the subject and language give him record of facts in detail.

He was the first and foremost Scholar of Orissa who proved Jayadeva with historical facts as the poet of Orissa flourished in the Ganga Court "Shree Jayadeva O Gita govinda" is a very important historical and literary treaties bringing into light the historiocity of Shree Jayadeva, his birth place at Kenduli on Prachi valley, his presiding cult, Radha and Madhava, his love and devotion to Shree Jagannath, his composition of Gita Govinda through the grace of the Lord and many other interesting account. Many Bengali Scholars who had established Jayadev as the court poet of Laxman Sen of Bengal finally accepted the argument of Mahapatra. Had the book been written in English it could have earned distinction at the National level.

His Khurda Ithasa evidently the history of Orissa of a crucial period is a unique contribution of Mahapatra. This treatise furnishes accounts of the illustrious Gajapati dynasty, their role in production of the then Orissa from the onslaugsts of invaders, their contribution to the up keep of the cult of Jagannath against the constant attacks of the Afgans and Mughals the accounts of the Khurda forts, the last greatest citadel of the Oriyas which was dashed to ground by the British army proves the historiocity of the Madala Panji (temple chronicle of Lord Jagannath) and relates the Socio-Political condition of Orissa. The vivid description of the facts in lucid language, the correlations of events in the content of Indian history prove his prolificness as a historian, the book remains a treasure.

The Jagannath temples in Eastern India, the last important work of Kedar babu is a compedium of Jagannath temples built in different parts of the country inconsonance with the spread of the cult. This book exhausts all the source materials ever available and has become enviable tool for the scholars.

Dhauli Itihasa fills up the 'gap' in Orissa history giving in details the famous Kalinga war which turned "Chandasoka" to 'Dharmasoka' the establishment of Tosali as the State capital of Kalinga under Asoka and a centre of Buddhism, engraving of special rock edicts on the Asvathama cave at Dhauli, the course of Buddhism in the subsequent period in Orissa and the circumstances leading to the downfall of Buddhism as a consequence of revival of Brahmanism and finally the fall of Tosali. This is a unique contribution of Mahapatra to the discipline of history. His report on the excavation at Belkhandi is interesting account of his discovery of Saptamatrika temple and other archaeological remains belonging to early Somavamsies of Kosala with their capital at Sripura (now in Madhya Pradesh). This relates the history of illustrious Somavamsies along with their contributions.

This by no means exhausts an account of Kedar babu's distinguished career as a writer. Each paper needs elucidations and assessment which possibly can not be done in a small paper. What is done here is only a miniscale percentage of what actually should be done to highlight his contributions. To immortalise the noble activities and to give due justice to his merit, scholarship and contribution it is expedient to publish all his works in consolidated book form with transliteration of some of his important history books.



# ARCHAEOLOGIST KEDARNATH

Dr. A. JOSHI



Late Kedarnath Mahapatra is more known as an archaeologist in India and in foreign countries. Orissa Historical Research Journal and References in the books on Orissa produced by Orissa Research Project provide ample evidence of his scholarship on Orissa archaeology. I know Kedarnath as the State Archaeologist of ex-State of Kalahandi where he excavated Belkhandi ancient site and discovered the remnants of a Saptamatrika temple and large number of Saiva images. Late Mahapatra and Padmasri Dr. Satyanarayan Rajguru joined served Gudahandi cave painting of Prehistoric period. Late Mahapatra and the writer had undertaken conservation of Satrughnesar group of temples at Bhubaneswar. Late Mahapatra was responsible for discovery of Jayadevas' Kenduli and the archaeological remains at Kenduli in Prachi river valley. Late Mahapatra undertook conservation of Sukleswar temple, Mohini temple, chausathi yogini temple at Hirapur, Bibhisaneswar temple and several other archaeological monuments of Orissa. Late Paramananda Acharya laid the foundation of Orissa State Arcrhaeology Department but it was late K. N. Mahapatra who is responsible in building up this Department in Orissa.



# ଗବେଷକ କେଦାରନାଥ ମହାପାତ୍ର

ଶ୍ରୀ ରବିନାରାୟଣ ଦାଶ

ପିଲାଦିନେ ସ୍କୁଲରେ ପଢ଼ିବାବେଳେ ଇତିହାସ ବହିର ଲେଖକଙ୍କ ନାଁ ଦେଖି ଜାଣିଥିଲି ବହିର ଲେଖକ ହେଉଛନ୍ତି, କେଦାରନାଥ ମହାପାତ୍ର । ସେତେବେଳେ କେଦାର ବାବୁଙ୍କୁ ଜାଣିବାର କୌଣସି ସୁବିଧା କିମ୍ବା ପ୍ରବୃତ୍ତି ନ ଥିଲା । ତଥାପି ନିମ୍ନ ଶ୍ରେଣୀଠାରୁ ଉପର ଶ୍ରେଣୀ ପର୍ଯ୍ୟନ୍ତ ଯେତେ ଇତିହାସ ବହି ପଢ଼ା ହେଉଥିଲା ସେ ସବୁରେ ଶିକ୍ଷା ବିଭାଗର ସ୍ୱୀକୃତ ଥାଉ ବା ନଥାଉ ତା'ର ଲେଖକ ଥିଲେ କେଦାରନାଥ ମହାପାତ୍ର । ମୋର ଇତିହାସ ପଢ଼ାରେ ଆଗ୍ରହ ନ ଥିଲେ ମଧ୍ୟ ଧାରଣା ହୋଇଥିଲା ଯେ ବୋଧହୁଏ ସରକାର କେଦାର ବାବୁଙ୍କୁ ଇତିହାସ ବହି ଲେଖିବାପାଇଁ ରଖିଛନ୍ତି । ମୁଁ ଦୀର୍ଘଦିନ ପରେ ମ୍ୟୁଜିୟମ୍‌ରେ ଚାକିରିପ୍ରାର୍ଥୀ ହୋଇ ଆସିବା ବେଳେ ଦେଖିଲି କେଦାରନାଥ ମହାପାତ୍ର ହେଉଛନ୍ତି ଏହାର ଅଧୀକ୍ଷକ । କିନ୍ତୁ ସେ କେଦାରନାଥ ମହାପାତ୍ର ଇତିହାସ ଲେଖକ କି ନୁହନ୍ତି ତାହା ବୁଝିବାରେ ମୋର ଆବଶ୍ୟକତା ନ ଥିଲା । ସଂଗ୍ରହାଳୟରେ ଯୋଗଦେବା ଦିନ ମୁଁ କେଦାର ବାବୁଙ୍କ ନିକଟରେ ନିଯୁକ୍ତିପତ୍ର ଦେବାକୁ ଗଲି । ସେ ଅତି ଆଗ୍ରହରେ ମୋତେ ବିଭିନ୍ନ ବିଷୟ ପଚାରି କ'ଣ କରିଛି ଓ କ'ଣ କରିବାକୁ ମନସ୍ଥ କରିଛି ଆଦି ପଚାରି ସାରିବା ପରେ ଇତିହାସ ପଢ଼ିବା ପାଇଁ ଓ ବିଶେଷ କରି ଓଡ଼ିଶାର ଇତିହାସ ଜାଣିବା ପାଇଁ କହିଥିଲେ । ଏହା ବ୍ୟତୀତ କେଉଁ ବିଷୟରେ ଅଦ୍ୟାବଧି ଗବେଷଣା ହୋଇପାରିନାହିଁ ଏବଂ ଓଡ଼ିଶା ଇତିହାସରେ କେଉଁ କେଉଁ ସନ୍ଦେହ ମୋଚନ ହେବା ଆବଶ୍ୟକ ତାହା ବୁଝାଇ ଦେଇଥିଲେ । ସେଥିପାଇଁ କ'ଣ କ'ଣ କରିବା ଆବଶ୍ୟକ ତାହା ପଚାରିବାରୁ ସେ କେତେକ ମୌଳିକ ସୂତ୍ର ଏବଂ କେତେକ ପୁସ୍ତକର ନାମ କହିଥିଲେ ଏବଂ ସେଥିରୁ ଗବେଷଣା ଆବଶ୍ୟକ ବୋଲି ସେ ମତ ଦେଇଥିଲେ । ମାତ୍ର ମୁଁ ଇତିହାସରେ ଅଗ୍ରଣୀ ନ ଥିବାରୁ ସେଥିରୁ ଶୁଣିଲେ ମଧ୍ୟ ତାକୁ ଗ୍ରହଣ କରିପାରିଲି ନାହିଁ । କିନ୍ତୁ ଗବେଷଣାର ଧାରା ସମ୍ପର୍କରେ ତାଙ୍କର ମାର୍ଗ ବିଷୟରେ କିଛି ଆଭାସ ପାଇଲି, ଗବେଷଣାର ରୂପରେଖ ମୁଁ ଯାହା ବୁଝିଥିଲି ଓ କେଦାର ବାବୁ ଯାହା କହିଲେ ସେଥିରେ ଆକାଶ ପାତାଳର ଫରକ ଦେଖିବାକୁ ପାଇଲି । କାରଣ ମୋର ପରମାରାଧ୍ୟ ଗୁରୁ ଡକ୍ଟର ଅସ୍ଥାପାନ ମୋତେ ଯେଉଁ ଗବେଷଣାର ପ୍ରେରଣା ଦେଇଥିଲେ ତା ସହିତ କେଦାର ବାବୁଙ୍କ ଚିନ୍ତାଧାରାର କୌଣସି ସାମ୍ୟ ନ ଥିଲା । ପରେ ମୁଁ ମନେକଲି ଯେ ବୋଧହୁଏ ବିଷୟଗତ ପାର୍ଥକ୍ୟ ହିଁ ଏହି ଚିନ୍ତା ପାର୍ଥକ୍ୟର କାରଣ । ପ୍ରଥମ ଦିନର ଏହି ଅନାଗ୍ରହ କ୍ରମେ ତାଙ୍କର ପିତୃତୁଲ୍ୟ ସ୍ନେହ ଓ ଦିଗ୍‌ଦର୍ଶନ ଫଳରେ ଧୀରେ ଧୀରେ ଦୂର ହେବାକୁ ଲାଗିଲା ଓ ମୁଁ କେଦାରବାବୁଙ୍କ ମାର୍ଗ ଓ ଡକ୍ଟର ଆସ୍ଥାପାନଙ୍କ ମାର୍ଗର ଏକ ସମନ୍ୱୟ ବାହାରକରି ମୋର ନିଜ ମାର୍ଗ ସ୍ଥିର କଲି ।

କିଛି ଦିନ ବିତିଗଲା ପରେ କେଦାର ବାବୁ ମୋତେ କହିଲେ—"କ'ଣ ହେଉଛି ? କିଛି ପ୍ରବନ୍ଧ ଲେଖିଲ ନାହିଁ ଆଉ ଗବେଷଣା କରୁଛ କ'ଣ ? କିଛି ଲେଖ" । ମୁଁ ଅପ୍ରସ୍ତୁତ ହୋଇ ପଚାରିଲି କ'ଣ ଲେଖିବି କିଛି ଜାଣି ପାରୁନି । ଇତିହାସ ସମ୍ପର୍କରେ ମୋର ତ ବିଶେଷ ଧାରଣା ନାହିଁ ଏଥିରେ ପୁଣି ପ୍ରବନ୍ଧ ଲେଖିବି କିପରି । ସେ କହିଲେ "ମ୍ୟୁଜିୟମ ପାଠାଗାର ତୁମକୁ ଭଲ ଲାଗୁଛି ପରା; ତାରି ଉପରେ ଲେଖୁନ କାହିଁକି" ? ମୁଁ ମନେ ମନେ ବିଚାରିଲି ପାଠାଗାର ଉପରେ ପ୍ରବନ୍ଧ ଲେଖିବି ତାକୁ ପୁଣି ଲୋକେ ପଢ଼ିବେ, ବରଂ ଚୁପ୍ ରହିବା ଭଲ । ତା'ର ଦୁଇଦିନ ପରେ କେଦାରବାବୁ ପଚାରିଲେ 'କ'ଣ ଲେଖା ସରିଲା" ? ମୁଁ କହିଲି 'କିପରି ଲେଖିବି କିଛି ଜାଣି ପାରୁନି' । ସେ କହିଲେ 'ଯାହା ପାରୁଛ ଲେଖ ଓ ମୋତେ ଦେଖାଅ' । ମୁଁ ବାଧ୍ୟ ହୋଇ ଆରମ୍ଭହୀନ ଓ କ୍ରମହୀନ ଗଦ୍ୟ ପୃଷ୍ଠାଏ ଲେଖିନେଇ ତାଙ୍କୁ ଦେଲି । ଅତି ଆଗ୍ରହ ସହକାରେ ତାକୁ ପଢ଼ି ସଂଶୋଧନ କରିବା ପରେ କେଉଁ କ୍ରମରେ କିପରି କେଉଁଠାରୁ ପାରାଗ୍ରାଫ କରି ଲେଖା ହେବ ତାହା ବୁଝାଇ ଦେଲେ । ଏହି ଲେଖାଟି ପୁନର୍ବାର ଲେଖି ତାଙ୍କୁ ଦେଖାଇଲି । ସେତେବେଳକୁ ମୋର ଲାଜ ଚାଲିଯାଇ ଆଗ୍ରହ ସୃଷ୍ଟି ହୋଇ ସାରିଥିଲା । ସେ ଲେଖାଟି ଦେଖିବାପରେ କହିଲେ ଏହାକୁ ଖବରକାଗଜକୁ ପଠାଇ ଦିଅ । ଏହି ସମୟରେ ମାତୃଭୂମିର ପଣ୍ଡିତ ପ୍ରବୋଧ କୁମାର ମିଶ୍ର କୌଣସି କାର୍ଯ୍ୟ ଉପଲକ୍ଷେ ମ୍ୟୁଜିୟମକୁ ଆସିଥିଲେ । କେଦାରବାବୁ କହିଲେ 'ଏହାଙ୍କୁ ପ୍ରବନ୍ଧଟି ଦେଇ ଦେଉନ ସେ ଛପାଇ ଦେବେ' । ମୁଁ ପ୍ରବନ୍ଧଟି ପ୍ରବୋଧ ବାବୁଙ୍କୁ ଦେଲି । ପରେ ପ୍ରବୋଧବାବୁ ତାକୁ ମାତୃଭୂମିରେ ଛପାଇ ଦେଲେ ।

ଏହା ମୋର ପ୍ରଥମ ପ୍ରବନ୍ଧ ଲେଖା ଓ ତା'ର ପ୍ରେରଣା ମୂଳରେ ଥିଲେ କେଦାରବାବୁ । ପ୍ରବନ୍ଧଟିର ନାଁ ଥିଲା 'ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ଗ୍ରନ୍ଥାଗାର' । ଏହାପରେ ଆହୁରି କେତୋଟି ପ୍ରବନ୍ଧ ତାଙ୍କ ମାର୍ଗଦର୍ଶନରେ ମୁଁ ଲେଖିଛି । ସେ ହେଉଛନ୍ତି ମୋର ପ୍ରଥମ ପ୍ରବନ୍ଧ ଲେଖା ଓ ଗବେଷଣାର ପଥପ୍ରଦର୍ଶକ ଗୁରୁ । ମାତ୍ର ସେ ସବୁବେଳେ କହନ୍ତି ସେ ମୋର ଗୁରୁ ନୁହନ୍ତି । ତାଙ୍କର ଏ ଉକ୍ତି ମୋତେ ଅପ୍ରସ୍ତୁତ କରେ । କେଉଁଠି ହେଲେ ଦାନକର ଫେରସ୍ତ ପାଇବାର ଦାବୀ ସେ କରନ୍ତି ନାହିଁ । ତେଣୁ ସେ ହେଉଛନ୍ତି ଜଣେ ଗୁରୁ ଓ ଆଦର୍ଶ ସ୍ଥାନୀୟ ମନସ୍ୱୀ ଗୁରୁ ।

ପରିପକ୍ୱ ବୟସ ହେତୁ କ୍ରମେ ତାଙ୍କର ଏକକ ଗବେଷଣା ଉଦ୍ୟମ ସାମୂହିକ ଉଦ୍ୟମ ଦିଗରେ ପ୍ରବାହିତ ହେବାକୁ ଆରମ୍ଭ କରିଥିଲା ଓ ଯୌଥ ଜୀବନର ଉଦ୍ୟମ ହେତୁ ବ୍ୟକ୍ତିଗତ ପ୍ରଚେଷ୍ଟା ଟିକିଏ ଶିଥିଳ ହୋଇଥିଲା । ଏହି ସମୟରେ ସେ ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କରି ଗବେଷଣା କାର୍ଯ୍ୟରେ ଲାଗିଲେ । ତାହାର ସଦ୍ୟଫଳ ସ୍ୱରୂପ 'ଖୁର୍ଦ୍ଧାର ଇତିହାସ, ଶ୍ରୀ ଗୀତଗୋବିନ୍ଦ ଓ ଶ୍ରୀ ଜୟଦେବ, **Jagannath Temples in Eastern India,** ଆଦି ପୁସ୍ତକମାନ ଅପ୍ର ପ୍ରକାଶ କଲେ । ଏହି ସମୟ ମଧ୍ୟରେ ସେ ଆଉ କେତେଖଣ୍ଡି ପୁସ୍ତକର ରଚନା ଶେଷ କରିଛନ୍ତି । ସେଥିମଧ୍ୟରେ 'ପୋଥି ଓ ପଥର'ରେ ଓଡ଼ିଶାର ପ୍ରତ୍ନତାତ୍ତ୍ୱିକ ଅବଶେଷ, ମନ୍ଦିରର ସ୍ଥାପତ୍ୟ ତଥା ଶୈଳୀ ଏବଂ ଓଡ଼ିଶାର ତାଳପତ୍ର ପୋଥିମାନଙ୍କ ସମ୍ପର୍କରେ ବିଶେଷ ଆଲୋଚନା ରହିଛି । ଅପ୍ରକାଶିତ ତାଳପତ୍ର ପୋଥିମାନଙ୍କର ଅଜ୍ଞାତ ଲେଖକ, ସେମାନଙ୍କ କଳାକୃତି ଓ ଓଡ଼ିଶାର ଜ୍ଞାନ ଭଣ୍ଡାର ତଥା ସାମାଜିକ ଏବଂ ଐତିହାସିକ ବୈଶିଷ୍ଟ୍ୟ ଏଥିରେ ସ୍ଥାନ ପାଇଛି । ଓଡ଼ିଶାର ଭୌମ ରାଜବଂଶ ସମ୍ପର୍କରେ ତାଙ୍କର ପରିସମାପ୍ତ ପୁସ୍ତକ ମଧ୍ୟ ଅପ୍ରକାଶିତ ରହିଛି । ଏହାବ୍ୟତୀତ ସେ ଗଙ୍ଗ ବଂଶର ରାଜତ୍ୱ କାଳରେ ଓଡ଼ିଶାର ଇତିହାସ ମଧ୍ୟ ଶେଷ କରିଛନ୍ତି । ଏଗୁଡ଼ିକ ଅପ୍ରକାଶିତ ଭାବରେ ପାଣ୍ଡୁଲିପି ଆକାରରେ ରହିଛି । ଏହି ଇତିହାସ ପୁସ୍ତକଗୁଡ଼ିକ ଏକତ୍ରିତ ହେଲେ ଓଡ଼ିଶା ଇତିହାସର ବହୁ ତଥ୍ୟ ସର୍ବସାଧାରଣରେ ପ୍ରକାଶ ପାଇବ । ସୂର୍ଯ୍ୟ ବଂଶୀ ଗଜପତି ରାଜାମାନଙ୍କ ସମ୍ପର୍କରେ ସେ ସ୍ୱତନ୍ତ୍ର ଏକ ଇତିହାସ ପୁସ୍ତକ ରଚନା କରିବାର ପରିକଳ୍ପନା କରିଥିଲେ, ବୋଧହୁଏ ତାହା ହୋଇପାରି ନାହିଁ ।

ଏଇ ଅସମୟରେ ନିଜ କାର୍ଯ୍ୟ ବାକି ରଖି ଏକ ବୃନ୍ତଚ୍ୟୁତ ପୁଷ୍ପପରି କେଦାର ବାବୁ ଝରିଗଲେ । ସଂଗ୍ରହାଳୟର ମାୟା ନାହିଁ; ପୁସ୍ତକ ସ୍ତୂପର ଆକର୍ଷଣ ନାହିଁ; ହାତରେ କଲମର ଚଳଚଞ୍ଚଳ ନଡ଼ । ତାଙ୍କ ଅନୁସନ୍ଧାନ ଗବେଷଣାରେ ଏକ ପୂର୍ଣ୍ଣଚ୍ଛେଦ । ମାନବର ସମସ୍ତ ଦ୍ୱନ୍ଦ୍ୱର ପରିସମାପ୍ତି ମଧ୍ୟରେ ସେ ନିଃଶେଷ । ପଛରେ ରହିଛନ୍ତି କେତେକ ବନ୍ଧୁ, ଆତ୍ମୀୟ, ଜନ୍ମସ୍ଥାନ ଓ କର୍ମସ୍ଥାନ ସହଯୋଗୀ ଅନୁରାଗ କଥା ଓ ପ୍ରଶସ୍ତିବାଣୀ ନେଇ । ଏଇଥି କ'ଣ ସବୁକିଛି । ବ୍ୟକ୍ତି ବିଶେଷର ବୁଦ୍ଧିଦୀପ୍ତ କର୍ମତତ୍ପରତାରେ ସମାଜ ଯେବେ ଉଦ୍‌ଭାସିତ ହୋଇ ଚହଲି ଉଠେ, ତେବେ ବ୍ୟକ୍ତି ଓ ସମାଜ ମଧ୍ୟରେ ବ୍ୟବଧାନର ରେଖା ନିଶ୍ଚିହ୍ନ ହୁଏ, ଏହାର ପରିସର ବହୁମୁଖୀ ଓ ତାହା ସମାଜକୁ ପୁଷ୍ଟ କରିବା ପାଇଁ ଉଦ୍ଦିଷ୍ଟ ହୁଏ । ସେହି ପରିପ୍ରେକ୍ଷୀରେ କେଦାର ବାବୁ ଥିଲେ ଐତିହାସିକ । ଅତୀତର ଉପଯୁକ୍ତ ତଥା ଯୁକ୍ତିଯୁକ୍ତ ଉପସ୍ଥାପନରେ ଅନୁସନ୍ଧିତ୍ସା ତାହା ରୂପାୟିତ । ସେଥିପାଇଁ ସେ ଓଡ଼ିଶାର ପ୍ରସିଦ୍ଧ ଐତିହାସିକ । ଐତିହାସିକ ସତ୍ୟର ଅପଳାପ କରୁଥିବା ନିବନ୍ଧର ପ୍ରତିବାଦ କରିବାରେ ସେ ସଂଗ୍ରାମୀ । ଅଜଣା ତଥ୍ୟର ପରିବେଷଣରେ ସେ ଅଦ୍ୱିତୀୟ । କ୍ଷମତା ଓ ଅର୍ଥର ମୋହ ଅପେକ୍ଷା ଶିକ୍ଷାର ମୋହରେ ସେ ମୁହ୍ୟମାନ—ସେଥିପାଇଁ ସେ ତ୍ୟାଗୀ । ସମସ୍ତ ଲେଖାରେ ସେ ଉନ୍ନତ ପରଂପରାର ଉପସ୍ଥାପକ, ସେଥିପାଇଁ ସେ ଜାତୀୟତାବାଦୀ । ଅନ୍ତତଃ ସଫଳ ବ୍ୟକ୍ତି ରୂପେ ଦେଶର ଶ୍ରଦ୍ଧାଲାଭ କରିବାରେ କେଦାର ବାବୁ ଥିଲେ କର୍ମଚିତ୍ତ ବ୍ୟକ୍ତିତ୍ୱ । ଏହା ବର୍ଣ୍ଣନାର ବସ୍ତୁ ନୁହେଁ, ଅନୁଭବର କଥା । ସାରା ଜୀବନ ଗୋଟିଏ ଆଦର୍ଶରେ ରୂପାୟିତ କରି ଗଢ଼ିବା ଓ ସେଥିରେ ସମସ୍ତ ନିଷ୍ଠା, ଶ୍ରମ ଓ ଆନନ୍ଦଲାଭ କରିବା ବ୍ୟକ୍ତିବିଶେଷର ପୁରୁଷାର୍ଥ । ସେହି ଦୃଷ୍ଟିରୁ କେଦାର ବାବୁ ଆଦର୍ଶ ସ୍ଥାନୀୟ ।

ବ୍ୟକ୍ତିବିଶେଷର ଏକ ସ୍ୱତନ୍ତ୍ର ଚରିତ୍ର ଅଛି । ତାହା ଐକିକ ବା ସାର୍ବଜନୀନ ହୋଇପାରେ । ସେଥିରେ ସାମାଜିକତାର ଦୁଇଟି ଦିଗ ପ୍ରକଟିତ ହୋଇଥାଏ । ସମାଜରୁ ଅହରଣ କରି ଅଥବା ସମାଜକୁ ଏକ ନୀରବ ଇଙ୍ଗିତ ଦେଇ ନିଜେ ପୁଷ୍ଟ ହେବା ଓ ତା ମାଧ୍ୟମରେ ଅନ୍ୟକୁ ଏବଂ ପରୋକ୍ଷରେ ସମାଜକୁ ପୁଷ୍ଟ କରିବା । ଦ୍ୱିତୀୟଟି ପ୍ରଥମଟି ଅପେକ୍ଷା ବ୍ୟାପକ ଏବଂ ତାଠାରୁ ଆଦର୍ଶ ସ୍ଥାନୀୟ । କେଦାର ବାବୁଙ୍କ ଜୀବନ ଆଲୋଚନା କଲେ ଜଣାଯାଏ ଯେ ସେ ପ୍ରଥମଟିକୁ ଦ୍ୱିତୀୟଟିର ପରିପୂରକ ରୂପେ ଗ୍ରହଣ କରିଥିଲେ । ସେ ନିରବଚ୍ଛିନ୍ନ ଭାବରେ ନିଜର ଲେଖା ମାଧ୍ୟମରେ ସମାଜକୁ ପୁଷ୍ଟ କରିବା ସଙ୍ଗେ ସଙ୍ଗେ ନିଜର ପ୍ରତିଷ୍ଠା ଅର୍ଜନ କରିଥିଲେ । ସେହି ପ୍ରତିଭାରେ ଆକର୍ଷିତ ହୋଇ ତାଙ୍କ ନିକଟକୁ ଆସୁଥିବା ବ୍ୟକ୍ତି ବିଶେଷଙ୍କୁ ପଥପ୍ରଦର୍ଶନ ଦେଇ ସେ ଅଧିକ ଭାବରେ ସମାଜକୁ ପୁଷ୍ଟ କରିଥିଲେ, ଏହାହିଁ ତାଙ୍କର ସାମାଜିକତା ତଥା ବ୍ୟାପକ ଆଦର୍ଶ । ଏହା ମଧ୍ୟ ଓଡ଼ିଶା, ଭାରତ ତଥା ଭାରତ ବାହାରର ଗବେଷକମାନଙ୍କ ପାଇଁ ଉନ୍ମୁକ୍ତ କରିଥିଲା ସହଯୋଗ ତଥା ଆନ୍ତରିକତାର ଦ୍ୱାର । ସେ ସବୁ

ବିତରଣ କରି ନଥିବାକୁ ସମ୍ପାନଦାତା କହିଲେ ଚଳେ । ସେ ପଦ୍ମଶ୍ରୀ ପାଇନାହାନ୍ତି କିମ୍ବା କୌଣସି ବିଶ୍ୱବିଦ୍ୟାଳୟ ତାଙ୍କୁ ଡକ୍ଟରେଟ୍ ପଦବୀରେ ଭୂଷିତ କରିନାହିଁ; କିନ୍ତୁ ସେ ଜନ୍ମଭୂମିର ସେବା କରିବାକୁ ଯାଇ ଶ୍ରେଷ୍ଠକବି ଜୟଦେବଙ୍କୁ ବଙ୍ଗ ଭୂମିରୁ ଓଡ଼ିଶାକୁ ଆଣିବାପାଇଁ ଅକ୍ଳାନ୍ତ ଉଦ୍ୟମ କରିଛନ୍ତି । ସେ ସର୍ବପ୍ରଥମେ Descriptive Catalogue of Sanskrit Manuscripts, Vol. IIରେ ବିଶ୍ୱନ୍ତ୍ରଶର୍ମାଙ୍କ ଓଡ଼ିଆତ୍ୱ ପ୍ରମାଣ କରିଛନ୍ତି । ଏଗୁଡ଼ିକ ଅନ୍ୟମାନଙ୍କ ଦ୍ୱାରା ବ୍ୟାପକ ଭାବରେ ପରୀକ୍ଷିତ ହୋଇଛି । ‘ଭୌମକର ବଂଶର ଆଦ୍ୟ ଉତ୍କୀର୍ଣ୍ଣ ୭୧୪ ଖ୍ରୀଷ୍ଟାବ୍ଦ’ ଓ ‘ରାଜମଲ୍ଲ ଦୁହିତା ତ୍ରିଭୁବନ ମହାଦେବୀ’ ତଥ୍ୟ ଦୁଇଟି ଅଧିକ ପରୀକ୍ଷିତ ହେବାର ଅପେକ୍ଷା ରଖେ । ତାଙ୍କର ସମସ୍ତ ଲେଖା ଗ୍ରନ୍ଥାବଳୀ ଆକାରରେ ପ୍ରକାଶିତ ହେଲେ ଓ ତାଙ୍କ ହାତରେ ପ୍ରସ୍ତୁତ ସମସ୍ତ ଟିପ୍ପଣୀ ରାଜ୍ୟ ଅଭିଲେଖାଗାରରେ ରହିଲେ ଭବିଷ୍ୟତ ଗବେଷକମାନଙ୍କର ବହୁ ଉପକାରରେ ଲାଗି ପାରିବ । ଏହା ରାଜ୍ୟର ସଂପଦ ହିସାବରେ ସଂରକ୍ଷିତ ହେବା ଆବଶ୍ୟକ ।



# ସେଦିନ ସେ ଶୋଇଗଲେ

ଦିନନାଥ ପାଠୀ



ସେଦିନ ସେ ଶୋଇଗଲେ,
କହୁ କହୁ ମନ୍ଦିରର କଥା,
ତାପରେ ଲହଡ଼ି ଭଳି ଅନ୍ଧାର ଆସିଲା ମାଡ଼ି
ଲେସିହେଲା ମନ୍ଦିର ଦେହରେ ।

ପୁନଶ୍ଚ ସକାଳ ହେଲା
କଥା କିନ୍ତୁ ସେଇଠି ରହିଲା ।
ପଥରର ମନ୍ଦିର ଭାଙ୍ଗିରୁଜି ମାଟିରେ ମିଶିଲା ।

ଅନେକ ଅକୁହା କଥା
ତୋର ବନ୍ଧା ହେଲା ।
ତାଳପତ୍ର ନଥି ଲମ୍ବା ହେଲା ।
ଇତିହାସ ଶୋଇଗଲା ଚୌପାଳି ଭିତରେ ।

ଘର ଓଳିଅର ଭୂଲୁଣ୍ଠିତ—
ବିଶାଳ ବାହୁରେ,
ସ୍ପନ୍ଦନ ଫେରିଲା ।
ଫର୍ଦ୍ଦ ଫର୍ଦ୍ଦ ଇସ୍ତାହାର ଲେଖାଗଲା ।
ଦୁର୍ଗାର ବନ୍ଧୁଙ୍କ ଠାରେ ।

ପଦ୍ମାବତୀ ସେଦିନ ପାଇଲା ଫେରି
ତା ପ୍ରେମିକର ପଦ ଚିହ୍ନ,
କେନ୍ଦୁଲିର କେଦାରେ କେଦାରେ ।

ନୂପୁରର ଛନ୍ଦେ ଛନ୍ଦେ
ନାୟିକାର ଖିଲ ଖିଲ ହସ
ଖେଳିଗଲା ।
ନାଗଫୁଲ ଭଳି କୋଣାର୍କ ବେଢ଼ାରେ ?

କାହାପାଇଁ ଏ ଇତିହାସ ?
କାହିଁକି ଏ ଜୟଗାନ ମଲା ମଣିଷର ?
ମଣିଷକ ବଞ୍ଚିରହେ ତମ୍ବାପଟା କଳଙ୍କି ଭିତରେ !

ମନ୍ଦିରେ ନାହାନ୍ତି ଦିଅଁ !
ପ୍ରତିଧ୍ଵନି ଆପଣା ସ୍ଵରର,
ଫୁଲମାଳ ଶ୍ଵାସରୁଦ୍ଧ କରେ
ଶହ ଶହ ପଥର ମୂର୍ତ୍ତିର ।

ମଣିଷ ହଜିଛି କଣ୍ଠ,
ଇତିହାସ ଅଳନ୍ଧୁ ଭିତର ।।



# ସାହିତ୍ୟ ସାଧକ କେଦାରନାଥ

ଶ୍ରୀ ଭଗବାନ ପଣ୍ଡା

ଓଡ଼ିଶାର ଇତିହାସ, ସଂସ୍କୃତ ଓ ଓଡ଼ିଆ ସାହିତ୍ୟର ଅଧ୍ୟୟନ ଓ ଗବେଷଣା କ୍ଷେତ୍ରରେ ସ୍ୱର୍ଗତ କେଦାରନାଥ ମହାପାତ୍ର ଜଣେ ଯୁଗପ୍ରବର୍ତ୍ତକ ଥିଲେ । ତାଙ୍କ ରଚନାରେ ଓଡ଼ିଶାର ବିସ୍ମୃତ ପାଇଁ ଇତିହାସ, ତାମ୍ରଶାସନ, ଅଭିଲେଖ, ପ୍ରାଚୀନ କବି ଓ କାବ୍ୟ ଶାସ୍ତ୍ର କାଳର କରାଳ କବଳରୁ ମୁକ୍ତିଲାଭ କରିବା ସଙ୍ଗେ ସଙ୍ଗେ ଅମର ଓ ବିଶ୍ୱ ବିଖ୍ୟାତ ହୋଇ ପାରିଛନ୍ତି । କେଦାରନାଥଙ୍କ ପାଣ୍ଡିତ୍ୟର ତୁଳନା ନାହିଁ । ସେ ଥିଲେ ତତ୍ତ୍ୱଜ୍ଞ ପଣ୍ଡିତ । ସେ ଏକାଧାରରେ ଇତିହାସ, ସାହିତ୍ୟ, ପ୍ରତ୍ନତତ୍ତ୍ୱ, ଅଭିଲେଖ ଓ ଗବେଷଣାତ୍ମକ ଆଲୋଚନାରେ ଓଡ଼ିଶାର ଅଦ୍ୱିତୀୟ ପଣ୍ଡିତ ଥିଲେ । ତାଙ୍କର ସାହିତ୍ୟ ସୃଷ୍ଟି ଯେପରି ସରସ, ସରଳ, ସାବଲୀଳ ଓ ସଙ୍କଳନାଦ୍ଭୁତ, ସେହିପରି ନିତ୍ୟ ନୂତନ ତତ୍ତ୍ୱ ଓ ତଥ୍ୟ ସମ୍ଭାରରେ ପରିପୂର୍ଣ୍ଣ । ଭାଷା, ଭାବ ଓ ପ୍ରତିପାଦ୍ୟ ବିଷୟ ବସ୍ତୁର ଉପସ୍ଥାପନାରେ ଐତିହାସିକ କେଦାରନାଥଙ୍କ ଏକ ସ୍ୱତନ୍ତ୍ର ଓ ନିଜସ୍ୱ ଶୈଳୀ ଥିଲା । ପ୍ରତ୍ୟେକ ଆଲୋଚନାତ୍ମକ ପ୍ରବନ୍ଧ ଓ ଗ୍ରନ୍ଥରେ ପରୋକ୍ଷଭାବେ ହେଉ ବା ପ୍ରତ୍ୟକ୍ଷଭାବେ ହେଉ, କେଦାର ବାବୁଙ୍କ ଦୃଢ଼ ଜାତୀୟତାବୋଧ, ଦେଶପ୍ରୀତି, ମାତୃଭାଷା ଓ ବିଶ୍ୱରପ୍ରତି ଯେଉଁ ଗଭୀର ମମତା ପ୍ରକାଶ ପାଇଛି ତାହାର ପଟାନ୍ତର ନାହିଁ ।

ବିଗତ ଅର୍ଦ୍ଧଶତାବ୍ଦୀକାଳ କେଦାରନାଥଙ୍କ ଲେଖନୀର ନିରବଚ୍ଛିନ୍ନ ଧାରା ଅପ୍ରତିହତଭାବେ ସଂସ୍କୃତ ସାହିତ୍ୟ, ଓଡ଼ିଆ ସାହିତ୍ୟ, ଇତିହାସ, ପ୍ରତ୍ନତତ୍ତ୍ୱ, ଉପାନ୍ତବାସୀ ଓଡ଼ିଆଙ୍କ ଜୀବନାଦର୍ଶ, କଳା, ଶିଳ୍ପ, ଭାସ୍କର୍ଯ୍ୟ, ଶିକ୍ଷା, ସଭ୍ୟତା ଓ ସଂସ୍କୃତି କ୍ଷେତ୍ରକୁ ସମୃଦ୍ଧ କରି ଆସିଛି । କେଦାର ବାବୁଙ୍କଠାରେ ଶ୍ରୀ ଜଗନ୍ନାଥ, ଜଗନ୍ନାଥ ଧର୍ମ ଓ ସଂସ୍କୃତି, କବିରାଜ ଜୟଦେବ ଓ ଗୀତଗୋବିନ୍ଦ କାବ୍ୟପ୍ରତି ଅସୀମ ଭକ୍ତି ଓ ଶ୍ରଦ୍ଧା ପୂରି ରହିଥିଲା । ଏହି ବିଷୟରେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ, ସେ ଅବିଶ୍ରାନ୍ତଭାବେ ଲେଖି ଚାଲିଥିଲେ ।

କବି ମାନସିଂହଙ୍କ 'ପୋଥିନାଥ କେଦାରନାଥ' ଉକ୍ତିଟି ଯଥାର୍ଥରେ ଅନୁଭବ ସିଦ୍ଧ । ପୋଥି ଓ ପଥର ଥିଲା ତାଙ୍କ ଜୀବନର ଅମୂଲ୍ୟ ସମ୍ପଦ । ପୋଥି ଓ ପଥର ସମ୍ବନ୍ଧୀୟ ଯେ କୌଣସି ପ୍ରକାଶିତ ଆଲୋଚନାତ୍ମକ ପ୍ରବନ୍ଧ ଓ ପୁସ୍ତକକୁ ସେ ଆନ୍ତରିକଭାବେ ସ୍ୱାଗତ କରୁଥିଲେ ଓ ନିବିଷ୍ଟଚିତ୍ତରେ ଅଧ୍ୟୟନ କରୁଥିଲେ । ମନ୍ଦିରରେ ପୂଜିତ ପ୍ରସ୍ତର ନିର୍ମିତ ଦେବ ବିଗ୍ରହ ଓ କେଦାର ବାବୁଙ୍କ ମଧ୍ୟରେ ବାହ୍ୟତଃ କୌଣସି ପ୍ରଭେଦ ନ ଥିଲେ ମଧ୍ୟ ଅନ୍ତର ତାଙ୍କର ସ୍ନେହ, ମମତା ଓ ବାଳସୁଲଭ ସରଳତାରେ ପରିପୂର୍ଣ୍ଣ ଥିଲା । ଓଡ଼ିଶା ଓ ଓଡ଼ିଆ ଜାତିର ସାମୂହିକ କଲ୍ୟାଣ ହିଁ ଜ୍ଞାନଯୋଗୀ କେଦାରନାଥଙ୍କ ସାହିତ୍ୟ ସାଧନାର ଏକମାତ୍ର ଲକ୍ଷ୍ୟ ଥିଲା । ତାଙ୍କପରି ନିରାଡମ୍ବର ଓ ନିରଳସ ଜୀବନ, ସ୍ୱାର୍ଥଶୂନ୍ୟ ନିରଭିଳାଷ ଓ ନିରଭିମାନ ହୃଦୟ ଏବଂ ସ୍ୱଦେଶ, ସ୍ୱଜାତି ଓ ସ୍ୱଭାଷାର ସମ୍ମାନାସ୍ପଦ ପ୍ରତିଷ୍ଠାର ଯଥାର୍ଥ ସାଧକ, ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପଣ୍ଡିତମାନେ ସ୍ୱର୍ଗତ କେଦାରନାଥଙ୍କୁ ଏକ ଜୀବନ୍ତ ଗ୍ରନ୍ଥାଗାର ବୋଲି କହନ୍ତି । ମହାପ୍ରସ୍ଥାଣର ଅବ୍ୟବହିତ ପୂର୍ବ ପର୍ଯ୍ୟନ୍ତ ତାଙ୍କର ଅସାଧାରଣ ମନୀଷା ଓ ସ୍ମୃତିଶକ୍ତି ଜାଗ୍ରତ ଥିଲା । 'ଜିହ୍ୱାଗ୍ରେ ସରସ୍ୱତୀ' କଥାଟି କେଦାର ବାବୁଙ୍କଠାରେ ସର୍ବତୋଭାବେ ପ୍ରଯୁଜ୍ୟ । ଓଡ଼ିଶାର ମନ୍ଦିର, ମୂର୍ତ୍ତି, ଇତିହାସ, କବି, କାବ୍ୟ, ସଂସ୍କୃତି ସମ୍ବନ୍ଧୀୟ ପ୍ରଶ୍ନର ଉତ୍ତରରେ ସେ ଯାହା କହନ୍ତି ବା ଲେଖନ୍ତି ସେଥିରେ ତନ୍ନିହିତ ଅନ୍ୟାନ୍ୟ ବହୁ ଜ୍ଞାତବ୍ୟ ତଥ୍ୟର ସମୀକ୍ଷା ଯେପରି କରାଯାଇଥାଏ ତାହା ଯେ କୌଣସି ଗବେଷକଙ୍କୁ ବିମୁଗ୍ଧ କରିବାରେ ସନ୍ଦେହ ରହେ ନାହିଁ । ତେଣୁ କେଦାର ବାବୁ ଓଡ଼ିଶାର ଜଣେ ବ୍ୟକ୍ତିଭାବେ ନୁହେଁ, ଏକ ମହତ୍ ଅନୁଷ୍ଠାନଭାବେ ସୁଧୀ ସମାଜରେ ସମ୍ମାନିତ ହୋଇଆସିଛନ୍ତି । "କୀର୍ତ୍ତିରକ୍ଷରମାଲମ୍ବ୍ୟ ସ୍ଥିରା ଭବତି ଭୂତଲେ"— ଉକ୍ତିଟି କେଦାରନାଥଙ୍କ ଜୀବନର ପରମ ଓ ଚରମ ଲକ୍ଷ୍ୟ ଥିଲା ।

ସ୍ୱର୍ଗତ କେଦାରନାଥ ମାତ୍ର ବାଇଶ ବର୍ଷ ବୟସରୁ ତାଙ୍କ ଲେଖକ ଜୀବନର ଶୁଭାରମ୍ଭ କରିଥିଲେ । ସେ ଇଂରାଜୀ ଭାଷାରେ ଶତାଧିକ ଗବେଷଣାତ୍ମକ ପ୍ରବନ୍ଧ ଓ ପାଞ୍ଚଖଣ୍ଡ ଗ୍ରନ୍ଥ ଏବଂ ଓଡ଼ିଆ ଭାଷାରେ ତିନିଶହରୁ ଅଧିକ ପ୍ରବନ୍ଧ ଓ ପାଞ୍ଚଖଣ୍ଡ ଗ୍ରନ୍ଥ ରଚନା କରିଯାଇଛନ୍ତି । ତଦ୍‌ବ୍ୟତୀତ ବହୁ ପୁସ୍ତକ, ପ୍ରବନ୍ଧ ଓ ସ୍ମରଣୀୟ ଟିପ୍ପଣୀ ପାଣ୍ଡୁଲିପି ଆକାରରେ ଅଦ୍ୟାପି ଅପ୍ରକାଶିତ ଅବସ୍ଥାରେ ରହିଛି ।

କେଦାର ବାବୁ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଆଠଟି ପ୍ରବନ୍ଧ ୧୯୩୩ ମସିହା ଜୁଲାଇ ମାସର 'ଦୈନିକ ଆଶା'ରେ ପ୍ରକାଶ କରିଥିଲେ । ତାଙ୍କ ଲିଖିତ ଓଡ଼ିଶାର ସ୍ୱତନ୍ତ୍ର ସଂଗ୍ରହାଳୟ ପ୍ରତିଷ୍ଠା, ଓଡ଼ିଶାର ପ୍ରତ୍ନତତ୍ତ୍ୱ ଗବେଷଣା, ଓଡ଼ିଶାରେ ଶିକ୍ଷାର ମାଧ୍ୟମ, ସଂଯୁକ୍ତ ଓଡ଼ିଶା, ମେଦିନୀପୁର ବାସୀ ଓଡ଼ିଆଙ୍କ ଜାଗରଣ, ଓଡ଼ିଶାରେ ଆୟୁର୍ବେଦର ପ୍ରସାର, ଓଡ଼ିଶାର ସ୍ୱତନ୍ତ୍ର ବନ୍ଦର ପ୍ରତିଷ୍ଠା, ଉତ୍କଳ ଇତିହାସରେ ବିଭ୍ରାଟ, ଭାରତର ଧାରାବାହିକ ଇତିହାସ ଶୀର୍ଷକ ବହି ଆଲୋଚନାତ୍ମକ ପ୍ରବନ୍ଧ ଜନ୍ମଭୂମି, ଆଶା, ସମାଜ, ପ୍ରଜାତନ୍ତ୍ର, ସହକାର, ନବଭାରତ ପ୍ରଭୃତି ପତ୍ରିକାରେ ୧୯୩୩ରୁ ୧୯୫୩ ମସିହା ମଧ୍ୟରେ ପ୍ରକାଶ ପାଇଥିବାର ଦେଖାଯାଏ ।

ଓଡ଼ିଶା ଇତିହାସ ସମ୍ବନ୍ଧରେ ଲିଖିତ ବୁଦ୍ଧଦେବଙ୍କ ଜନ୍ମସ୍ଥାନ, ଧଉଳି ଅନୁଶାସନ, କଳିଙ୍ଗ ଯୁଦ୍ଧ, ଖାରବେଳଙ୍କ ଭାରତ ବିଜୟ, ହାତୀଗୁମ୍ଫା ଶିଳାଲିପି, ଜୈନ ଧର୍ମ, ଯବନ ରାଜତ୍ୱ, ଗୁପ୍ତରାଜତ୍ୱ, ଶଶାଙ୍କଙ୍କ ପରିଚୟ, ଭୌମ ରାଜବଂଶ, ହର୍ଷାବ୍ଦ, ଉତ୍କଳର ରାଜବଂଶମାନଙ୍କର ଉତ୍ପତ୍ତି, ହୁଏନ୍‌ସାଂ ପ୍ରଦତ୍ତ ଉତ୍କଳ ଭ୍ରମଣ ବୃତ୍ତାନ୍ତ, ସୋମବଂଶ, ଶୈବ ଧର୍ମ, ପ୍ରାଚୀନ ଉତ୍କଳର ଶାସନ ବିଭାଗ, ଚୋଳଗଙ୍ଗଙ୍କ ଉତ୍କଳ ବିଜୟ, ଅନନ୍ତ ବାସୁଦେବ ମନ୍ଦିର ଶିଳାଲିପି, ଓଡ଼ିଆ ସାମନ୍ତ ରାଜାମାନଙ୍କ ପଦପଦବୀ, ଖୋରଧା ଦୁର୍ଗର ପ୍ରତିଷ୍ଠାତା ରାମଚନ୍ଦ୍ର ଦେବ, ଗଜପତି ବଂଶ, ଭୋଇବଂଶ, ଓଡ଼ିଆଙ୍କ ନବ ବର୍ଷ ଉତ୍ସବ, ଓଡ଼ିଶାର ପତନ ଓ ଅଭ୍ୟୁଦୟ ପ୍ରଭୃତି ପ୍ରାୟ ଶତାଧିକ ପ୍ରବନ୍ଧ ୧୯୩୨ରୁ ୧୯୫୮ ମସିହା ମଧ୍ୟରେ ସହକାର, ଉତ୍କଳ ସାହିତ୍ୟ, ନବଭାରତ, ଭାରତଦୀପ, ଝଙ୍କାର, ଉତ୍କଳ, ଜନ୍ମଭୂମି, ରସଚକ୍ର, ପ୍ରଜାତନ୍ତ୍ର, ଝଙ୍କାର, ନବଜୀବନ, ସମାଜର ଗୋପବନ୍ଧୁ ସ୍ମୃତି ବିଶେଷାଙ୍କ ପ୍ରଭୃତିରେ ପ୍ରକାଶ ପାଇଛି ।

ଓଡ଼ିଶାର ପ୍ରତ୍ନତତ୍ତ୍ୱ ସମ୍ବନ୍ଧୀୟ ପ୍ରାୟ ଅର୍ଦ୍ଧଶତ ପ୍ରବନ୍ଧ ମଧ୍ୟରେ ତୋଷାଳୀର ଅବସ୍ଥିତି, ଶିଶୁପାଳ ଦୁର୍ଗ ପରିକ୍ରମା, ଉତ୍କଳର ଜୈନକୀର୍ତ୍ତି, ଗନ୍ଧମାର୍ଦ୍ଦନ ପର୍ବତର ଐତିହାସିକ ବିଭବ, ରାଣୀପୁର ଝରିଆଲ ଓ ହୀରାପୁରର ଅତୀତ ବିଭବ, ଭୁବନେଶ୍ୱରର ପ୍ରାଚୀନ କୀର୍ତ୍ତି, କେଶରୀ କ୍ଷେତ୍ର, ଭୁବନେଶ୍ୱର, କଳାହାଣ୍ଡିର ପ୍ରାଚୀନ କୀର୍ତ୍ତି, ଓଡ଼ିଆଙ୍କ ଦଶଅବତାର, ପ୍ରାକୃତିକ ଉତ୍କଳର ପ୍ରତ୍ନସମ୍ପଦ, ଉତ୍କଳୀୟ ଶିଳ୍ପରେ ନାଗନାଗିନୀ, ଉତ୍କଳୀୟ ଶିଳ୍ପରେ ଗଜସିଂହ, ପଣ୍ଡିତ ଗୋପବନ୍ଧୁ ଓ କୋଣାର୍କ, ଓଡ଼ିଶାର ପ୍ରଭୁ ଜଗନ୍ନାଥ ଶୀର୍ଷକ ବିଭିନ୍ନ ପ୍ରବନ୍ଧମାନ ୧୯୩୫ରୁ ୧୯୫୪ ମସିହା ମଧ୍ୟରେ ସହକାର, ଉତ୍କଳ ସାହିତ୍ୟ, ଚତୁରଙ୍ଗ, ସମାଜ, ପ୍ରଜାତନ୍ତ୍ର ପ୍ରଭୃତି ସମ୍ବାଦପତ୍ରମାନଙ୍କରେ ପ୍ରକାଶ ଲାଭ କରିଛି ।

ଓଡ଼ିଶାର କବିକୋବିଦମାନଙ୍କ ସମ୍ବନ୍ଧରେ କେଦାରନାଥ ପ୍ରାୟ ପଚାଶରୁ ଅଧିକ ସଂଖ୍ୟକ ପ୍ରବନ୍ଧ ରଚନା କରିଛନ୍ତି । ତନ୍ମଧ୍ୟରେ ଜୟଦେବଙ୍କ ଜନ୍ମସ୍ଥାନ ଓ ସମୟ, ଗଜପତି ପୁରୁଷୋତ୍ତମଦେବ, କୋଶଳାନନ୍ଦ କାବ୍ୟ ପ୍ରଣେତା ଗଙ୍ଗାଧର ମିଶ୍ର, କବି କମଳଲୋଚନ ଖଡ଼୍ଗରାୟ, ବୈଜଲ ଦେବ, ଉଦୟନାଚାର୍ଯ୍ୟ, ନରସିଂହ ବାଜପେୟୀ, ବିଦ୍ୟାକର ବାଜପେୟୀ, ବିଦ୍ୟାଧର ବାସୁଦେବ ରଥ, ଗୋଦାବରୀଶ ମିଶ୍ର, କବିଚନ୍ଦ୍ର ମାର୍କଣ୍ଡେୟ, ଗଜପତି ପ୍ରତାପରୁଦ୍ର ଦେବ, ଜୀବଦେବାଚାର୍ଯ୍ୟ, କବିଚନ୍ଦ୍ର ଦିବାକର ମିଶ୍ର, ଶିକ୍ଷାଶ୍ଳୋକ ପ୍ରଣେତା ପୁରୁଷୋତ୍ତମ ଦେବ, ନିତ୍ୟାନନ୍ଦ, ବ୍ରଜସୁନ୍ଦର, ଶତାନନ୍ଦ, ବିଶ୍ୱନାଥ ମିଶ୍ର, ହଳଧର ମିଶ୍ର, ରଘୁତ୍ତମ ତୀର୍ଥ ପ୍ରଭୃତି ସଂସ୍କୃତ କବି ଓ ଶାସ୍ତ୍ରକାରଙ୍କ ସହିତ ଓଡ଼ିଆ କବି ଗୋପାଳ ତେଲେଙ୍ଗା, କବିବଲ୍ଲଭ ନାରାୟଣ, ଚୈତନ୍ୟ ଦାସ, କରୁଣାକର, କମଳନୟନ ମର୍ଦ୍ଦରାଜ, ବନମାଳୀ ଦାସ, ବିଷ୍ଣୁ ଦାସ, କୃଷ୍ଣସିଂହ ଭ୍ରମରବର, ଦୀନବନ୍ଧୁ ଦାସ, ନରସିଂହ ସେନ, ଜଗନ୍ନାଥ ଦାସ ପ୍ରଭୃତିଙ୍କ ପରିଚୟ ଓ ସାହିତ୍ୟିକ ଅବଦାନ ବିଷୟ ମୁଖ୍ୟତଃ ଉଲ୍ଲେଖନୀୟ । ଉକ୍ତ ପ୍ରବନ୍ଧଗୁଡ଼ିକ ଓଡ଼ିଶାର ବିଭିନ୍ନ ସମ୍ବାଦପତ୍ରରେ ୧୯୪୨ରୁ ୧୯୬୨ ମସିହା ମଧ୍ୟରେ ପ୍ରକାଶିତ ହୋଇଥିବାର ଦେଖାଯାଏ ।

ସମ୍ପାଦନା କ୍ଷେତ୍ରରେ କେଦାରବାବୁଙ୍କ ନାମ ଅବିସ୍ମରଣୀୟ । ସେ କଳାଲତା, ବିଚିତ୍ରବତୀ, ପ୍ରେମଲତା, କଳାବତୀ, ପ୍ରେମଲୋଚନା ପ୍ରଭୃତି ପ୍ରାଚୀନ ଓଡ଼ିଆ କାବ୍ୟର ସମ୍ପାଦକ ଭାବେ ସୁବିଦିତ । ଉକ୍ତ କାବ୍ୟଗୁଡ଼ିକର କାବ୍ୟକାର ଓ କାବ୍ୟିକ ସୌନ୍ଦର୍ଯ୍ୟର ତାତ୍ତ୍ୱିକ ଆଲୋଚନାମୂଳକ ମୁଖବନ୍ଧଗୁଡ଼ିକ କେଦାରନାଥଙ୍କ ପାଣ୍ଡିତ୍ୟର ପରିଚୟ ଦିଏ ।

ଐତିହାସିକ ଜୀବନର ଆରମ୍ଭକାଳରେ ପ୍ରଣୀତ ଇତିହାସ ସମ୍ବନ୍ଧୀୟ ବିଭିନ୍ନ ପାଠ୍ୟପୁସ୍ତକ ବ୍ୟତୀତ ସ୍ୱର୍ଗତ କେଦାରନାଥଙ୍କ ସର୍ବଶ୍ରେଷ୍ଠ ଅବଦାନ ମଧ୍ୟରେ ଖାରବେଳ ବା ଶ୍ରୀ ଖାରବେଳ, ତୋଷାଳୀର ଇତିହାସ, ଶ୍ରୀ ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ, ଖୁର୍ଦ୍ଧା ଇତିହାସର ନାମ ଉଲ୍ଲେଖନୀୟ । ଓଡ଼ିଶାର ଇତିହାସ, ସଂସ୍କୃତି ଓ ସାହିତ୍ୟ ସମ୍ବନ୍ଧୀୟ ଅଧ୍ୟୟନ ଓ ଗବେଷଣା କ୍ଷେତ୍ରରେ ଉକ୍ତ ଗ୍ରନ୍ଥଗୁଡ଼ିକର ଉପାଦେୟତା ଚିରସ୍ୱୀକୃତ ହୋଇ ରହିବ । ତଦ୍‌ବ୍ୟତୀତ ଇଂରାଜୀ ଭାଷାରେ ପ୍ରଣୀତ ଗ୍ରନ୍ଥ ଓ ପ୍ରବନ୍ଧ ଦ୍ୱାରା କେଦାରନାଥ କେବଳ ଭାରତବର୍ଷରେ ନୁହେଁ ଭାରତ ବାହାରେ ଆମେରିକା, ଇଂଲଣ୍ଡ, ଜର୍ମାନ୍, ସୁଇଜରଲଣ୍ଡ ପ୍ରଭୃତି ଦେଶର ବିଦ୍ୱାନମାନଙ୍କଠାରେ ସୁବିଦିତ ଥିଲେ । କେଦାରବାବୁ ସ୍ୱପ୍ରଣୀତ ଗ୍ରନ୍ଥ ଓ ପ୍ରବନ୍ଧାବଳୀ ମଧ୍ୟରେ ଶତ ଶତ ଗବେଷଣାତ୍ମକ ନିବନ୍ଧର ବୀଜ ବପନ କରିଯାଇଛନ୍ତି । ବର୍ତ୍ତମାନ ସେଗୁଡ଼ିକର ପୁନଃପ୍ରକାଶନ ଓ ସଂରକ୍ଷଣ ଏକାନ୍ତ ଆବଶ୍ୟକ । ସ୍ୱର୍ଗତ ଆତ୍ମାର ସଦ୍‌ଗତି କାମନାରେ ଓଡ଼ିଶାବାସୀ ଯଥାଶୀଘ୍ର 'କେଦାରନାଥ ରଚନାବଳୀ' ପ୍ରକାଶନକୁ ସ୍ୱାଗତ ଜଣାଉଛନ୍ତି ।

***

# ଭ୍ରାତୃସ୍ମରଣେ

ଶ୍ରୀ ଗୁଣନିଧି ମହାପାତ୍ର

"ଭାଇନା ଚାଲିଗଲେ..........!" ଏହି ମର୍ମସ୍ପର୍ଶୀ ଶବ୍ଦ ଦୁଇଟି କହିବାକୁ ଭଲ ଲାଗୁନାହିଁ ! ବିଶ୍ୱାସ କରିହେଉନାହିଁ !! କିନ୍ତୁ ନିୟତିର ଏ କ୍ରୂର ଅଟ୍ଟହାସ ଦିବାଲୋକ ପରି ସତ୍ୟ !!!

ଚିର ଚଞ୍ଚଳ, ଚିରକର୍ମଠ, ଅହରହ ଗଦା ଗଦା ବହି ଧରି, ପୃଷ୍ଠା ପରେ ପୃଷ୍ଠା ଲେଉଟାଇ, ଝର କଲମକୁ କାଳି ଦେଇ, ଦିସ୍ତା ଦିସ୍ତା କାଗଜ ଗାରେଇ ଯାଉଥିବା କଳେବର ମୋ' ଭାଇନା ହଠାତ୍ ଚିରଶାନ୍ତ, ଚିରପ୍ରଶାନ୍ତ, ଚିର ସୁଷୁପ୍ତିର କୋଳରେ ଆଖି ବୁଜିଦେଲେ କିପରି ? ଯାହାଙ୍କୁଅ ଦେହରୁ ଝଣ୍ଟିକାଶ କାଶି, ଝଡ଼, ବର୍ଷା,ଶୀତ, କାକର ନମାନି ଯେଉଁ ଭାଇନା ସାରସ୍ୱତ ସାଧନାରେ ବ୍ରତୀ ହୋଇ ଦେଶ ଓ ଦଶର ମୁଖୋଜ୍ଜ୍ୱଳ କରିବାରେ ଜୀବନ କଟାଇ ଦେଲେ; ସେ କିପରି ସେଦିନର ସକାଳଟାରୁ ଶୋଇ ପଡ଼ିଛନ୍ତି?

ନା....ନାଃ.... ଭାଇନା ସାରା ରାତି ଲେଖି ଲେଖି ଟିକିଏ ଅବଶ ହୋଇ ପଡ଼ିଥିବେ ! ରାତିରେ ହୁଏତ ତାଙ୍କୁ ଶ୍ୱାସ ରୋଗଟା କାବୁ କରିପକାଇଥିବ !! ସେ ସେଥିପାଇଁ ଲେଖା ପଢ଼ା, ଘରକରଣା, ପିଲାପିଲି ସମସ୍ତଙ୍କୁ ପାଶୋରି ଦେଇ ଦି' ଘଡ଼ି ନିଦେଇ ପଡ଼ିଥିବେ !!!

ଓଃ......ପୁଣି ସେହି କୋଳାହଳ......! ପୁଣି ସେଇ କାନ୍ଦଣା କଥା......!! ଭାଇନା ତାଙ୍କର ଗଦା ଗଦା ବହି, କଣେ ବହିଲର ଟିପାଖାତା ପକେଇ ଦେଇ କେବେହେଲେ ନିଶ୍ଚିନ୍ତରେ ଚିରନିଦ୍ରା ଯିବା ସମ୍ଭବ ନୁହେଁ ।

ତୁମେମାନେ କେହି ତାଙ୍କୁ ଚିହ୍ନି ନାହଁ, କେହି ତାଙ୍କୁ ଜାଣିନାହଁ । ମୁଁ ତାଙ୍କୁ ପିଲାଟି ଦିନରୁ ବେଶ ଜାଣିଛି । ତାଙ୍କର ଅଗାଧ ଜ୍ଞାନ ପିପାସା ସମ୍ବନ୍ଧରେ ମୁଁ ଯେତିକି ଜାଣେ, ଆଉ କେହି ଜାଣି ନାହାନ୍ତି !

ପ୍ୟାରୀମୋହନ ଏକାଡେମୀରେ ଅଧ୍ୟାପନା କରୁଥିବା ବେଳେ ମୁଁ ତାଙ୍କ ପାଖେ ପାଖେ ରହି ତାଙ୍କଠାରୁ ଅଳିଅଳ ସ୍ନେହ ପାଇଛି, ଦାୟିତ୍ୱବୋଧର ନିର୍ଦ୍ଦେଶ ପାଇଛି, କର୍ତ୍ତବ୍ୟ ବୋଧର ତାଡ଼ନା ପାଇଛି ! ତେଣୁ ମୁଁ ଜାଣେ; ସେ କେବେହେଲେ ଖାମଖିଆଲ ଭାବରେ ଶୋଇ ପାରିବେ ନାହିଁ !

ଆହୁରି ମୁଁ ଜାଣେ—ଭାଇନା ଗୋଟିଏ ନୂତନ ତଥ୍ୟର ଅନୁସନ୍ଧାନରେ ପାଗଳ ହୋଇଯାଆନ୍ତି; ନୂଆ ଲେଖକର ଗବେଷଣା ପୂର୍ଣ୍ଣ ବହି ଖଣ୍ଡିଏ ପାଇଲେ କୁଳୁରି ଉଠନ୍ତି ! ସେଇ ଖଣ୍ଡିକ ପଢ଼ି ପାରିବା ପର୍ଯ୍ୟନ୍ତ ତାଙ୍କୁ ଭୋକ, ଶୋଷ ସ୍ପର୍ଶ କରି ପାରେ ନାହିଁ ! ସେଭଳି ଜଣେ ଅଧ୍ୟବସାୟୀ ଅବେଳରେ ଶୋଇପାରିବେ ନାହିଁ !

ହଁ....ମୋର ଆହୁରି କେତେ କଥା ମନେ ପଡ଼ି ଯାଉଛି । ଭାଇନା ପ୍ରତ୍ନତତ୍ତ୍ୱ ଗବେଷଣା ଲାଗି ଅନେକ ସମୟରେ ବ୍ୟତିବ୍ୟସ୍ତ ହୋଇ ଉଠନ୍ତି । ଅଧ୍ୟାପକ ନିର୍ମଳଚନ୍ଦ୍ର ବାନାର୍ଜି, ଗବେଷକ ତଥା ପ୍ରତ୍ନତତ୍ତ୍ୱବିତ୍ ପରମାନନ୍ଦ ଆଚାର୍ଯ୍ୟ ପ୍ରଭୃତି ବିଶିଷ୍ଟ ବିଦ୍ୱାନ୍‌ମାନଙ୍କ ସାହଚର୍ଯ୍ୟ ଲାଭ କରି, ସେ ଜଣେ ପ୍ରତ୍ନତତ୍ତ୍ୱ ଗବେଷକ ହେବାର ଆଶାପୋଷଣ କରିଥିଲେ । ସେଇଥିପାଇଁ ଆମ ଘରର ଆଖପାଖ ବଣ, ବୁଦା, ଅନ୍ଧ, କନ୍ଦ, ଟାଙ୍ଗି ଟାଙ୍ଗର, ବାଲିବାଡ଼ି ସବୁଆଡ଼େ ବୁଲି, ସେ କେତେ କ'ଣ ପ୍ରାଚୀନ କୀର୍ତ୍ତିର ଅନୁସନ୍ଧାନ କରୁଥିଲେ । ଭଙ୍ଗା ମନ୍ଦିର, ଖଣ୍ଡିଆ ପୁରୁଣା କାନ୍ଥ, ବଣବୁଦା ତଳେ ଲୁଚି ରହିଥିବା ଖଣ୍ଡିଆ ଖାବରା ମୂର୍ତ୍ତି, ପୋକରା, ଘୁଣଖିଆ, ଛିଣ୍ଡା ତାଳପତ୍ର ପୋଥି, କଳଙ୍କି ଲଗା ତମ୍ବାପଟା ଦେଖିବା ଲାଗି ତାଙ୍କ ମନରେ କି ଅଦମ୍ୟ ପିପାସା ରହିଥିଲା ! ଗୌରବମୟ ଅତୀତର ଅନୁସନ୍ଧାନରେ ବ୍ରତୀ ହେବା ଲାଗି ସେ ଅନେକ କଷ୍ଟ ପାଇଛନ୍ତି, ବହୁ ଅସୁବିଧାର ସମ୍ମୁଖୀନ ହୋଇଛନ୍ତି, କେତେ ଦୁର୍ଜନଙ୍କର ହାତୁଡ଼ିରୁ ଅଳ୍ପକେ ବର୍ତ୍ତି ଆସିଛନ୍ତି; ଏସବୁ କଥା ମୁଁ ଜାଣେ । ସେଭଳି ନିଷ୍ଠାପର କର୍ମୀ, ଦୃଢ଼ବ୍ରତୀ ସାଧକ, ଅଧ୍ୟୟନଶୀଳ ଗବେଷକ ସାଧନାର ସିଡ଼ିମୂଳରୁ ଏହିପରି ଆସି ଦିନ ଛ'ଘଡ଼ି ଯାଏ ଶୋଇ ରହିବେ କିପରି ?

ନା......ନାଃ......ଏହା ସମ୍ପୂର୍ଣ୍ଣ ଅସମ୍ଭବ ! ଯେ ଯେତେ କହିଲେ ବି ମୁଁ ବିଶ୍ୱାସ କରିପାରିବି ନାହିଁ !! ମୁଁ ସେଦିନ ଅଙ୍ଗେ ନିଭେଇଛି, ପାଖେ ପାଖେ ରହି ସବୁ ବିଷୟ ଲକ୍ଷ୍ୟ କରିଛି; ହଠାତ୍ ସେ ସକ ହୋଇ ପଡ଼ିଲେ, କଳାହାଣ୍ଡି ପରି ଗୋଟିଏ ପାହାଡ଼, ଜଙ୍ଗଲ ଓ ହିଂସ୍ରଜନ୍ତୁ ପୂର୍ଣ୍ଣ ଗଡ଼ଜାତ ଅଞ୍ଚଳରେ ରହି ନିଜ ବୃତ୍ତି, ବିଦ୍ୟା ତଥା ଅଧ୍ୟବସାୟର ପରାକାଷ୍ଠା

ଦେଖାଇ ଦେବା ଲାଗି । ନନା, ବୋଉ, ସାଙ୍ଗସାଥି, ସାହିପଡ଼ିଶା ବନ୍ଧୁବାନ୍ଧବ କାହାରି ମନା ସେ ମାନିଲେ ନାହିଁ । ଏକାଜିଦ୍‌ଧରି ବସିଲେ—'କଟକ ସହରର ଚାକଚକ୍ୟ ଲୋଡ଼ା ନାହିଁ, ସାଙ୍ଗସାଥିଙ୍କ ଆଦର ସୋହାଗରେ ସ୍ପୃହା ନାହିଁ କିମ୍ବା ସହରୀ ବାବୁ ସାଜି ଧୂଆଁ ବାଣ ମାରି ଧନ ଅର୍ଜ୍ଜନ କରିବାର ଆକାଂକ୍ଷା ନାହିଁ ! ମୁଁ ମାଟି ଖୋଳି ବାହାରକରିବି ଉତ୍କଳ ଜନନୀର ଗୌରବମୟୀ ଗାଥା; ନିଜ ହାତରେ ପୋଛି ଦେବି ଦେଶ-ମାତୃକାର ଲଲାଟରୁ କଳଙ୍କ କାଳିମା ! ନିଷ୍ଠାପର ତଥା ନିରଳସ କର୍ମ ହେବା ମୋର ଲକ୍ଷ୍ୟ, ସାଧନାର ସିଦ୍ଧି ହେବା ମୋର ବୈଜୟନ୍ତୀ' !

ଦେୱାନ୍ ସାହେବ ଉମାଚରଣ ବାବୁଙ୍କଠାରୁ ପ୍ରେରଣା ପାଇବା ମାତ୍ରେ, ସେ କଳାହାଣ୍ଡି ରାଜ୍ୟର ପ୍ରତ୍ନତତ୍ତ୍ୱବିତ୍ ହେବାଲାଗି ପାଗଳ ହୋଇଗଲେ । ପ୍ରଧାନ ଶିକ୍ଷକ ବସନ୍ତ ବାବୁଙ୍କ ଲୋଭନୀୟ କଥାଗୁଡିକ ତାଙ୍କ ମନକୁ ଆଦୌ ଆକର୍ଷିତ କରି ପାରିଲା ନାହିଁ । ତେଣୁ ସେଦିନ କେଇଟା ମଧ୍ୟରେ କଟକ ସହରରୁ ମୋହ ତୁଟାଇ ଦେଇ ଛୁଟି ଗଲେ ବଣ, ପାହାଡ଼, ନଈ, ଖାଲ, ଉଚ୍ଚ ଡଙ୍ଗର ପୂର୍ଣ୍ଣ କଳାହାଣ୍ଡି ରାଜ୍ୟକୁ ।

ସେତେବେଳେ ବି ମୁଁ ତାଙ୍କ ପାଖେ ପାଖେ ରହି ତାଙ୍କର ପ୍ରତ୍ୟେକ ଗତିବିଧି ଲକ୍ଷ୍ୟ କରିଛି । କେତେ ଆଗ୍ରହରେ, କେତେ ଆଦରରେ, କେଉଁ ଅଦେଖା ହାତର ପ୍ରେରଣାରେ ସେ ଲାଗି ପଡିଥିଲେ 'ବେଲ୍‌ଖଣ୍ଡି'ର ଧ୍ୱଂସସ୍ତୂପର ଖନନ କାର୍ଯ୍ୟରେ ! ମହାରାଜା ପ୍ରତାପ କେଶରୀ ଦେଓଙ୍କ ପ୍ରେରଣା, ପ୍ରତ୍ନତତ୍ତ୍ୱବିତ୍ ହେବାର ଅଦମ୍ୟ ପିପାସା ତାଙ୍କ ଗନ୍ତବ୍ୟପଥକୁ ସୂଚିତ କରିଦେଲା । ହିଂସ୍ରଜନ୍ତୁ ପୂର୍ଣ୍ଣ ତେଲ ନଦୀର ଅବବାହିକାର ଖୋଦନ କାର୍ଯ୍ୟରେ ସେ ପାଗଳଙ୍କ ପରି ମାତିଗଲେ । କନ୍ଧ, ଡମ ଗାଁରୁ ଗଦା ଗଦା ତାଳପତ୍ର ପୋଥି ସାଉଁଟି ଆଣିଲେ । ଗୋଟିକ ପରେ ଗୋଟିଏ ଗବେଷଣା ପୂର୍ଣ୍ଣ ପ୍ରବନ୍ଧ ଲେଖି, ଓଡ଼ିଶାର ପତ୍ରପତ୍ରିକା ପୂର୍ଣ୍ଣ କରିଦେଲେ ! ସେତେବେଳେ ତାଙ୍କୁ ଯୌବନର ମଧୁକ ଆକର୍ଷଣ କରି ପାରିଲା ନାହିଁ; ଘରବାଡ଼ିର ମୋହ ପଛରୁ ଟାଣି ପାରିଲା ନାହିଁ; ବିଭୀଷିକାପୂର୍ଣ୍ଣ ଦୁର୍ଗମ ଅରଣ୍ୟାନୀ ତାଙ୍କର ଗତିରୋଧ କରି ପାରିଲା ନାହିଁ ! ସେ ସମୟର ତାଙ୍କ କର୍ମପ୍ରେରଣା ମୁଁ ନିଜେ ଦେଖିଛି, ତାଙ୍କର ଶିଷ୍ୟ, ସାନ ଭାଇ, ପ୍ରାଇଭେଟ ସେକ୍ରେଟେରୀ ହେବାର ସୁଯୋଗ ପାଇ ସବୁକିଛି ଜାଣିଛି ! ତାଙ୍କ ମନରେ ଥିଲା ଏକମାତ୍ର ତୃଷ୍ଣା 'ଉତ୍କଳ ଜନନୀ'ର ଲଲାଟରୁ କଳଙ୍କ କାଳିମା ପୋଛି ଦେଇ ଗୌରବମୟୀ ଟୀକା ଗର୍ବର ସହିତ ପିନ୍ଧାଇ ଦେବା ! ସେଭଳି ନିଷ୍ଠାପର ସାଧକ କେବେହେଲେ ଜଡ଼ ପାଲଟି ଯାଇ ନିଶ୍ଚଳ ହୋଇ ନ ପାରେ !

ହଁ....ହୋଇପାରେ......! ସେ ହୁଏତ ଆରପୁରରୁ ଗୋଟିଏ ଅଦେଖା ଇଙ୍ଗିତ ପାଇ କେଉଁଠି ଆହୁରି କଠୋର ବ୍ରତରେ ବ୍ରତୀ ହେବାଲାଗି, ମୌନ ହୋଇ ଗଭୀର ଚିନ୍ତାରେ ନିମଗ୍ନ ହୋଇପଡ଼ିଥିବେ । ତାଙ୍କର ପରାମର୍ଶଦାତା ପରମାନନ୍ଦ ଆଚାର୍ଯ୍ୟ, ସହକର୍ମୀ ପୂର୍ଣ୍ଣଚନ୍ଦ୍ର ରଥ, ସହଯୋଗୀ, ଶିବପ୍ରସାଦ ଦାଶ, ସମଧର୍ମୀ ପଣ୍ଡିତ ବିନାୟକ ମିଶ୍ର ପ୍ରଭୃତି ପଣ୍ଡିତମାନେ ସେପୁରରେ କେଉଁଠି କର୍ମକ୍ଳାନ୍ତ ହୋଇ ଭାଇନାଙ୍କ ସହଯୋଗ ଲାଗି ଇଙ୍ଗିତ ଦେଇଥିବେ ! ସେଇଥିପାଇଁ ହୁଏତ ଭାଇନା ଦୀର୍ଘପଥ ଅତିକ୍ରମ କରିବା ପୂର୍ବରୁ ଟିକିଏ ବିଶ୍ରାମ ନେବା ଆଳରେ ଆଖିବୁଜି ଘୁମେଇ ପଡ଼ିଥିବେ ! ତେବେ......ସେଥିପାଇଁ ଅନୁଶୋଚନା କାହିଁକି ? କ୍ରନ୍ଦନର ରୋଳ କାହିଁକି ? ପରିବାର, ପ୍ରତିବେଶୀ ତଥା ବନ୍ଧୁବର୍ଗଙ୍କ ମୁଖମଳିନ କାହିଁକି ???

ନାଃ......ଏହା ଆଦୌ ଶୁଭଲକ୍ଷଣ ନୁହେଁ ! ଆସ ତାଙ୍କ ଗତି ପଥରେ ସମସ୍ତେ ମିଳି ନବକିଶଳୟ ଦଳ ବିଛାଇ ଦେଇ, ତା' ଉପରେ ସୁଗନ୍ଧଭରା ପୁଷ୍ପଗୁଚ୍ଛ ସଜାଇ ଦେବା । ହରିନାମ ସଂକୀର୍ତ୍ତନରେ ତାଙ୍କ ଗତିପଥକୁ ନିନାଦିତ କରି ବିମାନରେ ବସାଇ ତାଙ୍କ ଗଳାରେ ଗଜରା ହାର ଲମ୍ବାଇଦେବା !

ସେ ଆମର ପାଇଁ, ଆମରି ଦେଶପାଇଁ, ଆମ ଜାତିର ଶୁଖିଲା ଓଠ ଫାଙ୍କରେ ହସ ଉକୁଟାଇବାପାଇଁ, ଆଜି ଅନନ୍ତ ପଥର ଯାତ୍ରୀ ସାଜିଛନ୍ତି । ଆମେ ବେଦମନ୍ତ୍ର ଉଚ୍ଚାରଣ କରି ତାଙ୍କ ମହାଯାତ୍ରାର ସାଫଲ୍ୟ କାମନା କରିବା ।

ଭାଇନା......! ମୋର ଗୁରୁ, ଉପଦେଷ୍ଟା, ତଥା ସହୋଦର ଭାଇନା, ତୁମେ ଭଲରେ, ନିସ୍ତବ୍ଧର ଇଙ୍ଗିତରେ, ଅନନ୍ତ ପଥର ଯାତ୍ରୀ-ବନ୍ଧୁବର୍ଗଙ୍କ ଆହ୍ୱାନରେ, ଆଗେଇ ଯାଅ !! ତୁମରି ସାଧନା, ତୁମର ଦୃଢ଼ତା, ନିଷ୍ଠାପରତା ଏବଂ କର୍ମପ୍ରେରଣା ଆମର ପଥ ପ୍ରଦର୍ଶନ କରୁ ! ମୋର ଅଶ୍ରୁଳ ଭକ୍ତିପୂର୍ଣ୍ଣ ପ୍ରଣାମ ଗ୍ରହଣ କରି ମୋତେ ଆଶୀର୍ବାଦ କର ଭାଇନା !!!

+✻+

# ଗୁରୁଦେବ ଶ୍ରୀ କେଦାରନାଥ ମହାପାତ୍ର; ଏକ ସ୍ମୃତି ଚାରଣ

ଅଧ୍ୟାପକ ଶ୍ରୀ ଦୁର୍ଗାଚରଣ କୁଅଁର



ଓଡ଼ିଶାର ପ୍ରଖ୍ୟାତ ଐତିହାସିକ, ପ୍ରତ୍ନତତ୍ତ୍ୱବିତ୍ ଓ ପଣ୍ଡିତ ଶ୍ରୀ କେଦାରନାଥ ମହାପାତ୍ରଙ୍କର ଆକସ୍ମିକ ବିୟୋଗ ଦେଶ ପକ୍ଷରେ ଏକ ଅପୂରଣୀୟ କ୍ଷତି । ଏ କେତେ ବର୍ଷ ଧରି ସେ ପ୍ରାୟ ଅସୁସ୍ଥ ରହୁଥିଲେ । ତଥାପି ଓଡ଼ିଶାର ଇତିହାସ, ସାହିତ୍ୟ ଓ ସଂସ୍କୃତି ସମ୍ପର୍କରେ ତାଙ୍କର ଗବେଷଣା ଓ ଲେଖାଲେଖି ଶେଷଯାଏ ଅବ୍ୟାହତ ରହିଥିଲା । ସେ ଓ ଡକ୍ଟର ସତ୍ୟନାରାୟଣ ରାଜଗୁରୁ ଲେଖିଥିବା ଓଡ଼ିଶାର ଏକ ପୂର୍ଣ୍ଣାଙ୍ଗ ଇତିହାସ ଏବେ ବି ଅପୂର୍ଣ୍ଣ । ତାଙ୍କ ପରି ଓଡ଼ିଶାର ଇତିହାସ, ସାହିତ୍ୟ ଓ ସଂସ୍କୃତିର ଜଣେ ନୀରବ ଓ ଏକନିଷ୍ଠ ସାଧକ ଏ ମାଟିରେ ବିରଳ କହିଲେ ଚଳେ ।

ଶ୍ରୀଯୁକ୍ତ କେଦାରନାଥ ମହାପାତ୍ରଙ୍କ ସହିତ ମୋର ସମ୍ପର୍କ ବହୁତ ଦିନର । ମୁଁ କଟକ ପ୍ୟାରୀମୋହନ ଏକାଡେମୀରେ ପଢୁଥିବାବେଳେ ସେ ମୋର ଶିକ୍ଷକ ଥିଲେ । ତାଙ୍କର ଶୁଭ୍ର ଧୋତି ପଞ୍ଜାବୀ ପରିହିତ ସୌମ୍ୟ ଚେହେରା, ମଧୁର ବ୍ୟବହାର ଓ ଇତିହାସ ଅଧ୍ୟାପନାରେ ଐକାନ୍ତିକ ନିଷ୍ଠା ଏବେ ବି ମୋ ସ୍ମୃତିରେ ଉଜ୍ଜ୍ୱଳ ହୋଇ ରହିଛି । ମହନୀୟ ବ୍ୟକ୍ତିତ୍ୱ ଓ ଛାତ୍ର ବତ୍ସଳତା ଯୋଗୁଁ ସେ ସମସ୍ତଙ୍କର ପ୍ରିୟ ଥିଲେ । କିନ୍ତୁ ତାଙ୍କ ପରି ଜଣେ ପ୍ରତିଭାବାନ ଐତିହାସିକ ଓ ଗବେଷକଙ୍କ ପକ୍ଷରେ ବେଶି ଦିନ ସ୍କୁଲରେ ଶିକ୍ଷକତା କରିବା ସମ୍ଭବ ହୋଇ ନ ଥିଲା । ଗବେଷଣା ପାଇଁ ଅନୁକୂଳ ପରିବେଶ ପାଇବାରୁ କିଛି ଦିନ ପରେ ସେ ଶିକ୍ଷକତା ଛାଡ଼ି କଳାହାଣ୍ଡି ଚାଲି ଯାଇଥିଲେ ।

ତା'ପରେ ଅନେକ ବର୍ଷ ଧରି କେଦାର ବାବୁଙ୍କ ସହିତ ମୋର ସାକ୍ଷାତ ହୋଇ ନ ଥିଲା । ମୁଁ ପାରଳାଖେମୁଣ୍ଡି କଲେଜରେ ଅଧ୍ୟାପକ ଥିବାବେଳେ ୧୯୫୭ ସାଲରେ ପୁଣି ତାଙ୍କ ସହିତ ଦେଖା । ପାରଳାଖେମୁଣ୍ଡିରେ ଦୁଇ ଦିନ ପାଇଁ ତାଙ୍କୁ ମୋ ଘରେ ଅତିଥିରୂପେ ପାଇବାର ସୌଭାଗ୍ୟ ମୋର ହୋଇଥିଲା । ପାରଳାଖେମୁଣ୍ଡି ମହାରାଜାଙ୍କ କଲେଜ ଏକ ପ୍ରାଚୀନ କଲେଜ । ତା'ର ପୁସ୍ତକାଗାର ବି ବେଶ ସମୃଦ୍ଧ । ମୁଁ ପୁସ୍ତକାଗାର ଦାୟିତ୍ୱରେ ଥାଏ । ଦେଖିଲି ପାଠାଗାରରେ ଅନେକ ଗୁଡ଼ିଏ ସଂସ୍କୃତ ଓ ଓଡ଼ିଆ ତାଳପତ୍ର ପୋଥି ବହୁ ବର୍ଷ ଧରି ପଡ଼ିରହି କୀଟଦଷ୍ଟ ହୋଇ ନଷ୍ଟ ହୋଇ ଯାଉଛି । ସେଥିରେ ସୁନ୍ଦର କୋଟିକିଆ ହୋଇଥିବା ହାତୀ ଦାନ୍ତର ବାନ୍ଧୁଣୀ ମଧ୍ୟ କେତେକ ପୋଥିରେ ଥିଲା । ସେଗୁଡ଼ିକୁ ଓଡ଼ିଶା ଷ୍ଟେଟ ମ୍ୟୁଜିୟମକୁ ପଠାଇ ଦେବା ଉଚିତ ହେବ ବୋଲି ମୁଁ କଲେଜର ତତ୍କାଳୀନ ସୁଯୋଗ୍ୟ ଅଧ୍ୟକ୍ଷ ସ୍ୱର୍ଗୀୟ ଡଃ ଦାମୋଦର ମିଶ୍ରଙ୍କୁ ପ୍ରସ୍ତାବ ଦେଲି । ଅଧ୍ୟକ୍ଷ ମହାଶୟ ଓଡ଼ିଶା ସରକାରଙ୍କୁ ଏ ବିଷୟ ଜଣାଇବାରୁ କେଦାରବାବୁ ସେ ପୋଥିଗୁଡ଼ିକ ଆଣିବା ପାଇଁ ପାରଳାଖେମୁଣ୍ଡି ଯାଇଥିଲେ । ଗୁରୁଦେବଙ୍କ ସହିତ ବହୁ ବର୍ଷପରେ ସାକ୍ଷାତ । ମୋ ମନରେ ଭାରି ଆନନ୍ଦ । ଅନେକ ପୁରୁଣା କଥା ବସି କଥାବାର୍ତ୍ତା ହେଲୁ । କଲେଜ ପୁସ୍ତକାଗାରରୁ ପ୍ରାୟ ୫୦।୭୦ ଖଣ୍ଡ ପୋଥି ବାଛି ସାଙ୍ଗରେ ଧରି ସେ ଭୁବନେଶ୍ୱର ଫେରିଲେ । ତା'ର କେତେ ବର୍ଷ ପରେ ଭୁବନେଶ୍ୱର ବସଷ୍ଟାଣ୍ଡରେ ଦୈବାତ ତାଙ୍କ ସହିତ ସାକ୍ଷାତ ହେଲା । ପାରଳାଖେମୁଣ୍ଡିରୁ ଆଣିଥିବା ପୋଥି ବିଷୟ ତାଙ୍କୁ ପଚାରିଲି । ସେ କହିଲେ ସଙ୍ଗୀତଶାସ୍ତ୍ର ସମ୍ବନ୍ଧୀୟ ପୋଥି ଓ ଆଉ କେତେକ ଉପାଦେୟ ପୋଥି ସେଥିରେ ଥିଲା । ସେ ସବୁ ପଢ଼ି ତା'ର ସମ୍ପାଦନା ସେ କରୁଛନ୍ତି ।

ଓଡ଼ିଶା ଷ୍ଟେଟ ମ୍ୟୁଜିୟମରେ ପୋଥି ବିଭାଗର କ୍ୟୁରେଟର ଥିବାବେଳେ କେଦାରବାବୁଙ୍କ ଅକ୍ଳାନ୍ତ ପରିଶ୍ରମ ଯୋଗୁଁ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ବହୁ ତାଳପତ୍ର ପୋଥି ସଂଗୃହୀତ ହୋଇଥିଲା । କେତେକ ପୋଥି ପାଠକରି ସେଗୁଡ଼ିକର ସମ୍ପାଦନା ସେ କରିଥିଲେ । ତାଙ୍କ ଦ୍ୱାରା ପ୍ରସ୍ତୁତ A Descriptive Catalogue of Sanskrit Literature ଏକ ଅତି ଶ୍ରମସାଧ୍ୟ ଓ ପାଣ୍ଡିତ୍ୟପୂର୍ଣ୍ଣ କୃତି । ଗଭୀର ପାଣ୍ଡିତ୍ୟ, କଠୋର ସାଧନା ଓ ଅଧ୍ୟବସାୟ ବିନା ଏ ପ୍ରକାର କାର୍ଯ୍ୟ ଅସମ୍ଭବ । ଭୁବନେଶ୍ୱରର ଅଦୂରରେ ହୀରାପୁରଠାରେ ଥିବା ଚଉଷଠି ଯୋଗିନୀ ମନ୍ଦିରକୁ କେଦାରବାବୁହିଁ ପ୍ରଥମେ ଲୋକଲୋଚନକୁ ଆଣିଥିଲେ । ଭାରତରେ ଏ ପ୍ରକାର ଯୋଗିନୀ ମନ୍ଦିର ଚାରିଟି ସ୍ଥାନରେ ଅଛି ଏବଂ ସେଥିମଧ୍ୟରୁ ଓଡ଼ିଶାରେ ଦୁଇଟି—ଗୋଟିଏ ହୀରାପୁରଠାରେ ଏବଂ ଅନ୍ୟଟି ବଲାଙ୍ଗିର ଜିଲ୍ଲାର ରାଣୀପୁର ଝରିଆଲଠାରେ । Orissa Historical Research Journalରେ ଏକ ଦୀର୍ଘ ଗବେଷଣାତ୍ମକ ପ୍ରବନ୍ଧ ପ୍ରକାଶ କରି କେଦାରବାବୁ ହୀରାପୁରର ଚଉଷଠି ଯୋଗିନୀ

ମନ୍ଦିର ପ୍ରତି ପାଠକ, ଗବେଷକ ଓ ଐତିହାସିକଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଉତ୍କଳର କବିରାଜ ଗୀତଗୋବିନ୍ଦ ରଚୟିତା ଜୟଦେବଙ୍କ ଜନ୍ମପୀଠ କେନ୍ଦୁଲୀଠାରେ ଯେଉଁ ସାଂସ୍କୃତିକ ଅନୁଷ୍ଠାନମାନ ଗଢ଼ି ଉଠି ପ୍ରତିବର୍ଷ ସେଠାରେ ଜୟଦେବ ଜୟନ୍ତୀ ପାଳନ ହେଉଛି କେଦାରବାବୁ ଥିଲେ ତା'ର ପ୍ରଧାନ ଉଦ୍ୟୋକ୍ତା ଓ ପ୍ରେରଣାର ଉତ୍ସ । ତାଙ୍କର ଦୀର୍ଘ ମୁଖବନ୍ଧ ସହ କବି ଜୟଦେବଙ୍କ ଗୀତଗୋବିନ୍ଦର ପାଣ୍ଡିତ୍ୟପୂର୍ଣ୍ଣ ସଂପାଦନା, ଖୁର୍ଦ୍ଧା ଇତିହାସ, ଧଉଳୀର ଇତିହାସ, ଖାରବେଳ ପ୍ରଭୃତି ଗବେଷଣାତ୍ମକ ଗ୍ରନ୍ଥ ତାଙ୍କ ପାଣ୍ଡିତ୍ୟ ଓ ଦେଶପ୍ରୀତିର ଅମ୍ଳାନ ସ୍ୱାକ୍ଷର ବହନ କରେ । ଓଡ଼ିଶାର ବହୁ ଜୀର୍ଣ୍ଣ ମନ୍ଦିରର ସଂସ୍କାର ଓ ପୁନର୍ଗଠନରେ ତାଙ୍କର ଅବଦାନ ଅବିସ୍ମରଣୀୟ ।

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ମଧ୍ୟ କେଦାରବାବୁଙ୍କର ଗଭୀର ପ୍ରବେଶ ଥିଲା । ଏ ସଂପର୍କରେ ତାଙ୍କର ବହୁ ପାଣ୍ଡିତ୍ୟପୂର୍ଣ୍ଣ ପ୍ରବନ୍ଧ ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଛି । ଭକ୍ତକବି ଦୀନକୃଷ୍ଣଙ୍କ 'ରସକଲ୍ଲୋଳ' କାବ୍ୟର ଗଭୀର ଅନୁଶୀଳନ କରି ତା'ର ବିଭିନ୍ନ ତତ୍ତ୍ୱ ଉପରେ ପ୍ରବନ୍ଧମାନ ସେ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ କରିଥିଲେ । ମୃତ୍ୟୁର ସ୍ୱଳ୍ପ ପାଞ୍ଚ ଦିନ ପୂର୍ବରୁ ରସକଲ୍ଲୋଳ ଉପରେ ତାଙ୍କର ଆଲୋଚନା ପ୍ରକାଶ ପାଇଥିବା 'ଝଙ୍କାର' ଓ 'ନବରବି'ର କେତେକ ପୁରୁଣା ସଂଖ୍ୟା ସେ ମୋଠାରୁ ମଗାଇଥିଲେ । ପ୍ରବନ୍ଧଗୁଡ଼ିକୁ ଏକତ୍ର କରି ବହି ଆକାରରେ ଛାପିବା ବୋଧହୁଏ ତାଙ୍କର ଉଦ୍ଦେଶ୍ୟ ଥିଲା । ତାଙ୍କର ଅନେକ କାମ ପରି ଏ କାମଟି ମଧ୍ୟ ଅପୂର୍ଣ୍ଣ ରହିଯାଇଛି ।

ଓଡ଼ିଶାର ଜିଲ୍ଲା ଗେଜେଟିୟର ଓ ରାଜ୍ୟ ଗେଜେଟିୟର ସଂକଳନ କାର୍ଯ୍ୟରେ କେଦାର ବାବୁ ବହୁଭାବେ ସଂଶ୍ଳିଷ୍ଟ ଥିଲେ । ସଂସ୍କୃତ ସାହିତ୍ୟକୁ ଓଡ଼ିଶାର ଅବଦାନ ସଂପର୍କରେ ଏକ ଉଚ୍ଚକୋଟୀର ପ୍ରବନ୍ଧ ସେ ରାଜ୍ୟ ଗେଜେଟିୟର ପାଇଁ ଲେଖିଛନ୍ତି ।

ଆମ ଦେଶରେ ଗୁଣୀ, ପଣ୍ଡିତ ଏବଂ ଆଜୀବନ ସାହିତ୍ୟ, କଳା ଓ କୃଷ୍ଟିର ସାଧକମାନଙ୍କ ପ୍ରତି ଯେ ଉପଯୁକ୍ତ ଧ୍ୟାନ ଦିଆଯାଏ ନାହିଁ ଓ ଯଥାଯୋଗ୍ୟ ସମ୍ମାନ ପା'ନ୍ତି ନାହିଁ ଏହା ଏକ ନିଷ୍ଠୁର ସତ୍ୟ । ସେମାନଙ୍କ ମୃତ୍ୟୁ ପରେ ଆମେ ବକ୍ତୃତା ମଞ୍ଚରୁ କିମ୍ବା ଏକ ସ୍ମରଣିକା ପ୍ରକାଶକରି ସେମାନଙ୍କର ଗୁଣ କୀର୍ତ୍ତନ କରି ଦେଇ ଆମର କର୍ତ୍ତବ୍ୟ ଶେଷ ହୋଇଗଲା ବୋଲି ମନେକରୁ । ଏ ସବୁ ଦେଖିବାକୁ ବା ଶୁଣିବାକୁ ସେ ଆଉ ନ ଥାନ୍ତି । ଇଂରେଜ କବି Henry Dobsonଙ୍କର "Fame is a food for dead men to eat" ଆପ୍ତବାକ୍ୟଟିର ପ୍ରଚଣ୍ଡ ବ୍ୟଙ୍ଗ ଆମ ହୃଦୟକୁ ସ୍ପର୍ଶ କରେନାହିଁ । ଜୀବଦ୍ଦଶାରେ ଅବହେଳା କରି ମୃତ୍ୟୁ ପରେ ଲୁହ ଗଡ଼ାଇବା ଏକ ପ୍ରବଞ୍ଚନା ବ୍ୟତୀତ ଆଉ କ'ଣ ହୋଇପାରେ ! କେଦାର ବାବୁଙ୍କ ନିକଟ ସଂପର୍କରେ ଆସି ମୁଁ ଅନୁଭବ କରିଛି ଯେ ଓଡ଼ିଶାର ଇତିହାସ, ସାହିତ୍ୟ ଓ ସଂସ୍କୃତିର ଗବେଷଣାରେ ସାରା ଜୀବନ ଉତ୍ସର୍ଗ କରି ଦେଶ ଓ ସମାଜଠାରୁ ଯଥାଯୋଗ୍ୟ ସମ୍ମାନ ଓ ସ୍ୱୀକୃତି ସେ ପାଇପାରି ନାହାନ୍ତି । ଏ ଅଭିମାନ ଓ କ୍ଷୋଭ ତାଙ୍କର ଶେଷ ଯାଏ ରହିଗଲା ।

ସେ ତ ଚାଲିଗଲେ । ଏବେ ଦେଶର ଜୀବିତ କେଦାରବାବୁମାନଙ୍କ ପ୍ରତି ଧ୍ୟାନ ଦେଇ ଆମେ ଯଦି ପୂଜ୍ୟପୂଜା କରିପାରୁ ତାଙ୍କର ସ୍ୱର୍ଗତ ଆତ୍ମା ହୁଏତ ଶାନ୍ତି ପାଇବ । ଆମେ ଆମର ଏକ ଜାତୀୟ କର୍ତ୍ତବ୍ୟ ପାଳନ କରିବା ।



# 'ଉତ୍କଳ-ରତ୍ନ' କେଦାରନାଥ

ଅଧ୍ୟାପକ--ଗୌରୀକୁମାର ବ୍ରହ୍ମା

କେଦାର ବାବୁ ଚାଲିଗଲେ, ଏକଥା ଚିନ୍ତାକଲା ବେଳକୁ ମନରେ ଶୋକସନ୍ତାପର ଧାରା ବହିଯାଉଛି । ଅର୍ଦ୍ଧ ଶତାବ୍ଦୀର ସାଧନାମୟ ଜୀବନଦ୍ୱାରା ସେ ନିଜକୁ ଏକ ଚଳନ୍ତି ଅନୁଷ୍ଠାନରେ ପରିଣତ କରି ଦେଇଥିଲେ । ଆଜି ତାଙ୍କର ତିରୋଭାବରେ ସେ ଅନୁଷ୍ଠାନ ଚିରକାଳ ପାଇଁ ବନ୍ଦ ହୋଇଗଲା । ଶିକ୍ଷକ ରୂପେ ଜୀବନ ଆରମ୍ଭ କରି, ଓଡ଼ିଶାର ସାହିତ୍ୟ, ସଂସ୍କୃତି ଓ ସମାଜ ସେବା କ୍ଷେତ୍ରରେ ସେ ଜଣେ ଅଦ୍ୱିତୀୟ ସାଧକରୂପେ ଆତ୍ମପ୍ରତିଷ୍ଠା କରି ପାରିଥିଲେ । ସେ ଥିଲେ ପ୍ରକୃତରେ ' ଉତ୍କଳ-ରତ୍ନ ' ।

ଗତ ପ୍ରାୟ ଅର୍ଦ୍ଧ ଶତାବ୍ଦୀ ଧରି ଓଡ଼ିଆରେ ଏବଂ ଇଂରାଜୀରେ ସେ ଶହ ଶହ ପ୍ରବନ୍ଧ ଲେଖିଛନ୍ତି । ପ୍ରତିଷ୍ଠିତ ହୋଇଥିବା ବହୁ ଐତିହାସିକ ମତବାଦ, ତାଙ୍କର ଗବେଷଣାର ଆଲୋକରେ ପରିବର୍ତ୍ତିତ ହୋଇଯାଇଛି । ଗତ ୨୫ ବର୍ଷ ଧରି ମୁଁ ତାଙ୍କ ପାଖେ ପାଖେ ଥାଇ, ତାଙ୍କର ଜ୍ଞାନର ପରିସର କଳନା କରି ଆସିଛି । ଓଡ଼ିଶାର ଅତୀତକୁ ଯଥାଯଥ ଭାବରେ ଆଜିର ପଣ୍ଡିତ ଓ ପାଠକଙ୍କ ଆଗରେ ଥୋଇବା ଥିଲା ତାଙ୍କର ଚରମ ଓ ପରମ ଲକ୍ଷ୍ୟ । ସ୍ୱର୍ଗତ ଜଗବନ୍ଧୁ ସିଂହଙ୍କ ପରେ ଓଡ଼ିଆ ପ୍ରାଣକୁ ଚିହ୍ନିବା ପାଇଁ ଓ ଓଡ଼ିଆର ଆତ୍ମସମ୍ମାନ ପ୍ରତିଷ୍ଠା କରିବାପାଇଁ ଏଭଳି ଜ୍ଞାନ ଗରିଷ୍ଠ ଗବେଷକ ଓଡ଼ିଶାରେ ଅତ୍ୟଳ୍ପ ମାତ୍ର ଜନ୍ମ ଗ୍ରହଣ କରିଛନ୍ତି । ଆଜି ତାଙ୍କର ସ୍ମୃତି ତର୍ପଣ କରିବାକୁ କଲମ ଧରିବା ବେଳେ, ଶହ ଶହ ଘଟଣା ପୂର୍ଣ୍ଣିମା ଦିନର ସମୁଦ୍ର ପରି, ମୋ ମନରେ ତରଙ୍ଗାୟିତ ହୋଇଉଠୁଛି । ମନେ ପଡୁଛି, ରବୀନ୍ଦ୍ର ମଣ୍ଡପରେ ଅନୁଷ୍ଠିତ, ଜୟଦେବଙ୍କ ସଂପର୍କରେ ସରକାରଙ୍କ ପକ୍ଷରୁ ଆୟୋଜିତ ଆଲୋଚନା ଚକ୍ର । କେଦାର ବାବୁ ଥିଲେ ପ୍ରଥମ ଆଲୋଚକ । ପ୍ରଥମେ କହିଲେ—

"ଆପଣମାନେ ଭାବୁଥିବେ, ଜୟଦେବ ତ ବଙ୍ଗଳାର ମେଳବୋଲି ମହାନଗରୀ କଲିକତାର ବଡ଼ବଡ଼ିଆମାନେ ଲେଖିଯାଇଛନ୍ତି ଓ ପ୍ରଚାର କରିଯାଇଛନ୍ତି, ତାହା ବଦଳିବ କିପରି । କିନ୍ତୁ ମୁଁ ଆପଣଙ୍କୁ ବର୍ତ୍ତମାନ ୩୦ଟି ପର୍ଯ୍ୟନ୍ତ ଉଦାହରଣ ଦେଇ ଦେଖାଇଦେବି, ଯହିଁରୁ ଆପଣମାନେ ଜାଣିବେ, ଓଡ଼ିଶା ସଂପର୍କରେ ବଙ୍ଗଳାର ବଡ଼ବଡ଼ିଆମାନେ ଯାହାସବୁ ଲେଖିଯାଇଥିଲେ, ତାହା କିପରି ବର୍ତ୍ତମାନ "ଡାହାମିଛ" ବୋଲି ପ୍ରମାଣ ହୋଇଗଲାଣି ।" ଏହାପରେ ସେ ଗୋଟିକପରେ ଗୋଟିଏ ଉଦାହରଣ ଦେଇ, ବିଧିବଦ୍ଧ ଭାବରେ କେତେକ ଲେଖକ ଓଡ଼ିଶା ବିରୁଦ୍ଧରେ ଅନେକ କଥା "ଇତିହାସ" ନାମରେ କିପରି ଲେଖିଯାଇଛନ୍ତି ଓ ପରବର୍ତ୍ତୀ କାଳରେ ସେ ସବୁ କିପରି ଖଣ୍ଡିତ ହୋଇଯାଇଛି, ତାହା ସେ ବୁଝାଇଥିଲେ । ସମସ୍ତ ଶ୍ରୋତା ତାଙ୍କର ସେହି ବିବରଣୀ ଶୁଣି ଆନନ୍ଦ ବିହ୍ୱଳ ହୋଇଯାଇଥିଲେ । ଶେଷରେ ସେ କହିଲେ, "ଜୟଦେବ ସମସ୍ୟା" ଠିକ୍ ଏହିପରି । ଓଡ଼ିଆ ବିରୋଧୀ ମିଥ୍ୟା ଜାଲ ବେଶୀ ଦିନ ରହିବନାହିଁ । ଏହା କହି, ଜୟଦେବଙ୍କ ସଂପର୍କରେ ବହୁ ତଥ୍ୟ ପ୍ରକାଶ କରିଥିଲେ । ତାଙ୍କର ସେ ଗବେଷଣା ବର୍ତ୍ତମାନ ପୁସ୍ତକ ଆକାରରେ (ଓଡ଼ିଆରେ) ପ୍ରକାଶ ପାଇ ବିରୁଦ୍ଧବାଦୀମାନଙ୍କର ଅନ୍ତରରେ ଆତଙ୍କର ଝଡ଼ ସୃଷ୍ଟି କରିଛି ।

କେଦାର ବାବୁ ଓଡ଼ିଶାର ସଂସ୍କୃତ ପଣ୍ଡିତ ଓ କବିମାନଙ୍କ ସଂପର୍କରେ ଗବେଷଣା କରି, ଇଂରାଜୀରେ ଯେଉଁ ସବୁ ପ୍ରବନ୍ଧ ଓ ନିବନ୍ଧ ଲେଖିଛନ୍ତି, ଓଡ଼ିଶାରେ ତା'ର ପଟାନ୍ତର ନାହିଁ । ଏହି କାର୍ଯ୍ୟ ମୁଖ୍ୟତଃ ଥିଲା ସଂସ୍କୃତ ଅଧ୍ୟାପକମାନଙ୍କର କାର୍ଯ୍ୟ । କେଦାର ବାବୁ ସେ କ୍ଷେତ୍ରର ଲୋକ ନୁହନ୍ତି । କିନ୍ତୁ ନିଜର ନିରଳସ ସାଧନା, ଜ୍ଞାନ ପିପାସା ତଥା ମାତୃଭୂମି ଓଡ଼ିଶାର ଗୌରବ ପ୍ରତିଷ୍ଠା କାମନାରେ, ଦୀର୍ଘ ୪୦ ବର୍ଷ ପରିଶ୍ରମ କରି ସେ ଯେଉଁ ତଥ୍ୟରାଜି ଦିବାଲୋକକୁ ଆଣିଛନ୍ତି, ତାହାର ପଟାନ୍ତର ନାହିଁ । ଅଭିଧାନ ଗ୍ରନ୍ଥ ଲେଖକ ପୁରୁଷୋତ୍ତମଙ୍କୁ ପଣ୍ଡିତମାନେ ଉତ୍କଳ ଗଜପତି "ପୁରୁଷୋତ୍ତମ" ଦେବ ବୋଲି କହୁଥିବାବେଳେ କେଦାର ବାବୁ ଏଇ ପ୍ରତିଷ୍ଠିତ ମତବାଦକୁ ଖଣ୍ଡନକରି ଯେଉଁ ଆଲୋକ ପ୍ରଦାନ କରିଛନ୍ତି ତାହା ଏକାବେଳକେ ବିସ୍ମୟକର ।

କେଦାର ବାବୁ ଜୀବନ ଆରମ୍ଭ କରିଥିଲେ ଇତିହାସ ଶିକ୍ଷକ ଭାବରେ । ଭାରତ ଇତିହାସରେ ଉତ୍କଳର ଯଥାର୍ଥ ପରିଚୟ ଉପଲବ୍ଧି ନ କରି, ତାଙ୍କର ମନ ବଡ଼ ବ୍ୟଥିତ ହୋଇଯାଇଥିଲା । ସମସାମୟିକ ଭାବରେ ମୟୂରଭଞ୍ଜରେ ପରମାନନ୍ଦ ଆଚାର୍ଯ୍ୟ, ପୁରୀରେ ଜଗବନ୍ଧୁ ସିଂହ, ପାରଳାଖେମୁଣ୍ଡିରେ ସତ୍ୟନାରାୟଣ ରାଜଗୁରୁ, ବଲାଙ୍ଗୀରରେ ପୂର୍ଣ୍ଣଚନ୍ଦ୍ର ରଥ, ସମ୍ବଲପୁରରେ ଶିବ ପ୍ରସାଦ ଦାସ ଓ କେନ୍ଦ୍ର ଓଡ଼ିଶାର କେତେଜଣ ସାଧକ ଓଡ଼ିଶାର ଗୌରବ ପ୍ରତି ଭାରତୀୟ ଐତିହାସିକମାନଙ୍କର ଦୃଷ୍ଟି ଆକର୍ଷଣ କରିବା ପାଇଁ ପ୍ରବଳ ଚେଷ୍ଟା କରିଥିଲେ । ସେହି ପରିବାରର ଜଣେ ସନ୍ତାନ ଭାବରେ କେଦାର ବାବୁ ନିଜକୁ ସଙ୍ଗଠିତ କରିଥିଲେ । କିନ୍ତୁ ପ୍ରାଚ୍ୟତତ୍ତ୍ୱ ବିଶାରଦମାନଙ୍କର ଦୃଷ୍ଟି ସମକ୍ଷରେ ଓଡ଼ିଶାର ସଂସ୍କୃତ

ପରମ୍ପରା ଏବଂ ସୃଷ୍ଟି ସୌରଭର ପ୍ରଚାର ପାଇଁ ତାଙ୍କର ଯେଉଁ ସାଧନା, ତାହା ସମସ୍ତଙ୍କୁ ଟପି ଯାଇଥିଲା । ସୌଭାଗ୍ୟକ୍ରମେ ସେ ରହିଲେ ଓଡ଼ିଶାର ରାଜ୍ୟ ସଂଗ୍ରହାଳୟର ତୁଙ୍ଗ କର୍ମଚାରୀ, ତତ୍ତ୍ୱାବଧାରକ । ସେହି ସୂତ୍ରରେ ସମଗ୍ର ଓଡ଼ିଶାକୁ "ହସ୍ତାମଳକ" ତୁଲ୍ୟ ଦେଖିବାର ସୁଯୋଗ ଲାଭ କରିଥିଲେ । ନୃସିଂହନାଥର ଶିଳାଲେଖ, ବଂଶଧାରା ନଦୀ କୂଳରେ ଧର୍ମକୀର୍ତ୍ତିଙ୍କର ଆଶ୍ରମର ସନ୍ଧାନ ୬୪ ଯୋଗିନୀଙ୍କ ଉପରେ ଆଲୋଚନା, ଓଡ଼ିଶାର ମୂର୍ତ୍ତି ତତ୍ତ୍ୱ, ମନ୍ଦିର କଳା, ଭଗ୍ନ ମନ୍ଦିରର ପୁନଃ-ନିର୍ମାଣ କଳା ଇତ୍ୟାଦି ଇତ୍ୟାଦି ବିଷୟରେ ତାଙ୍କର ଜ୍ଞାନର ଗଭୀରତା ମତେ ବେଳେ ବେଳେ ଅଭିଭୂତ କରି ଦେଉଥିଲା । ମୁଁ ଦୀର୍ଘ ୯ ବର୍ଷ ଧରି ତିନି ଏକାଡେମୀର ସେକ୍ରେଟାରୀ ଭାବେ ରହିଲି । ତଳ ବଖରାରେ ମୋର ଅଫିସ । ମୋ ମୁଣ୍ଡ ଉପର ବଖରାରେ କେଦାର ବାବୁଙ୍କ ଅଫିସ । ପ୍ରତିଦିନ ବହୁବାର ଦେଖା ସାକ୍ଷାତ । ପ୍ରତିଦିନ ବହୁ ବିଷୟରେ ଆଳାପ । ଓଡ଼ିଶାର ୧୩ଟି ଜିଲ୍ଲାରେ ଅବହେଳିତ ହୋଇ ପଡ଼ି ରହିଥିବା ଐତିହାସିକ ତଥା ସାଂସ୍କୃତିକ ଉପାଦାନ ଉପରେ ଆଲୋଚନା ଚାଲିଥାଏ । ବ୍ୟକ୍ତିଗତ ଭାବରେ ସମଗ୍ର ଓଡ଼ିଶା ବାରମ୍ବାର ବୁଲି ପ୍ରତିବର୍ଷ ଶତ ଶତ ଭାଷଣ ଦେଉଥିବାବେଳେ, ବିଭିନ୍ନ ବିଷୟରେ ତାଙ୍କଠାରୁ ଯେଉଁ ପରାମର୍ଶ, ପ୍ରେରଣା ଏବଂ ଜ୍ଞାନଲାଭ କରୁଥିଲି, ତାହା ମୋର ଜୀବନକୁ ଆଲୋକଦୀପ୍ତ କରୁଥିଲା ! କେଦାରବାବୁଙ୍କ ତିରୋଭାବରେ ଓଡ଼ିଶା ସଂପର୍କରେ ଜ୍ଞାନର ଏକ ଝରଣା ଶୁଖିଯାଇଛି । ସେହି ଝରଣାର ଶୀତଳ ଜଳ ପାନ କରି ଯେଉଁମାନେ ଶାନ୍ତିଲାଭ କରୁଥିଲେ, ଆଜି ସେମାନେ ଚିରକାଳପାଇଁ ନିରାଶ ହୋଇଯାଇଛନ୍ତି ।

ମଧ୍ୟଯୁଗ ଓଡ଼ିଆ ସାହିତ୍ୟର ଗବେଷଣା କ୍ଷେତ୍ରରେ କେଦାରବାବୁଙ୍କର ଅବଦାନ ଏକାବେଳକେ ଅଭିନନ୍ଦନୀୟ । ଶତାଧିକ ପ୍ରବନ୍ଧ ଲେଖି, ଓଡ଼ିଆ କବିମାନଙ୍କର କାଳ ନିରୂପଣ, ସାହିତ୍ୟ ସର୍ଜନା ଏବଂ ଅନ୍ୟାନ୍ୟ ଅନେକ ବିଷୟରେ ନୂତନ ତଥ୍ୟ ଉପସ୍ଥାପନ କରି ତରଙ୍ଗଭଙ୍ଗ କରିଅଛନ୍ତି ।

ଏଭଳି ଭାବରେ ଲେଖିଗଲେ ଗୋଟିଏ ପୁସ୍ତକ ହୋଇଯିବ । ସେଭଳି ସୁଦୀର୍ଘ ଆଲୋଚନାପାଇଁ ଆଜିର ଏ ଅବସର ନୁହେଁ । ମୁଁ ତାଙ୍କ ପରିବାରର ଜଣେ ବ୍ୟକ୍ତି ଭାବରେ, ତାଙ୍କର ଜଣେ ଅନୁଜ ଭାବରେ ତଥା ତାଙ୍କ ଦ୍ୱାରା ଆବିଷ୍କୃତ ବହୁସଂଖ୍ୟକ ତଥ୍ୟର ଜଣେ ପ୍ରଚାରକ ଭାବରେ ତାଙ୍କୁ ଯେପରି ମହନୀୟ ଆସନ ଦେଇଆସିଛି, ଏଭଳି ଗୋଟିଏ କ୍ଷୁଦ୍ର ପ୍ରବନ୍ଧରେ ତାହା ବର୍ଣ୍ଣନା କରିହେବ ନାହିଁ ।

ମୁଁ ତାଙ୍କୁ ଏ ଜୀବନରେ ଭୁଲିପାରିବି ନାହିଁ । ତାଙ୍କପରି ଓଡ଼ିଶାପ୍ରେମୀ ଏବଂ ଓଡ଼ିଶା ଜ୍ଞାନସଂପନ୍ନ ଲୋକ ମୁଁ ଅତ୍ୟନ୍ତ ଦେଖିଅଛି । ସେ ଥିଲେ ଏକ ଚଳନ୍ତି ଜ୍ଞାନକୋଷ । ତାଙ୍କର ସାଧନାଭାସ୍ୱର, ତେଜୋମୟ ପ୍ରତିଭା-ପୁରୁଷର ଚରଣାରବିନ୍ଦରେ ମୁଁ ମୋର ବିନମ୍ର ଭକ୍ତି ଅର୍ଘ୍ୟ ଅର୍ପଣ କରୁଅଛି । ଦେଶପାଇଁ ଓ ଜାତିପାଇଁ ଯାହାର ଜୀବନ ଉତ୍ସର୍ଗୀକୃତ ତାଙ୍କର ଆତ୍ମା ଅବଶ୍ୟ ଶାନ୍ତି ଓ ସଦ୍‌ଗତି ଲାଭ କରିବ । ସେଥିପାଇଁ କୌଣସି ବ୍ୟକ୍ତିର ସୁପାରିଶ୍ ଆବଶ୍ୟକ ହେବନାହିଁ । ନିଜଗୁଣ, ତ୍ୟାଗ ଓ ସାଧନାର ସମ୍ବଳ ଘେନି ସେ ସ୍ୱର୍ଗର ନନ୍ଦନ ବନରେ ବିହାର କରିବେ ।

ତଥାପି ପ୍ରତିଭା ପୂଜା ଦୃଷ୍ଟିରୁ ଆମର କେତେଗୋଟି କର୍ତ୍ତବ୍ୟ ରହିଅଛି । ସେସବୁ କର୍ତ୍ତବ୍ୟ ଭିତରୁ ଗୋଟିଏ କର୍ତ୍ତବ୍ୟ ହେଉଛି, ତାଙ୍କର ସମସ୍ତ ଇଂରାଜୀ ଓ ଓଡ଼ିଆ ରଚନାକୁ ଗ୍ରନ୍ଥାବଳୀ ଆକାରରେ ଶୀଘ୍ର ପ୍ରକାଶ କରିବା । ଏଥିପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ଓ ସରକାରଙ୍କ ସଂସ୍କୃତି ବିଭାଗ ଦରଦୃଷ୍ଟି ହେବା ବିଧେୟ । ତାଙ୍କର ଯାହାସବୁ ଅପ୍ରକାଶିତ ଲେଖା ରହିଅଛି, ତାକୁ ତୁରନ୍ତ ସଂଗ୍ରହ କରାଯିବା ଉଚିତ । ତାଙ୍କର ପୁତ୍ର ଶ୍ରୀମାନ୍ ପ୍ରସନ୍ନକୁମାର ରେଭେନ୍‌ସା କଲେଜରେ ଓଡ଼ିଆ ଅନର୍ସରେ ମୋର ଛାତ୍ର ଥିଲେ । ତେଣୁ କେଦାର ବାବୁଙ୍କର ଅପ୍ରକାଶିତ ଲେଖାଗୁଡ଼ିକ ସଂଗ୍ରହଦିଗରେ ଦୃଷ୍ଟି ଦେବାକୁ ତାଙ୍କୁ ବିଶେଷ ଅସୁବଧା ହେବନାହିଁ । ବଣରେ ଗୋଟିଏ ଫୁଲଗଛର ଫୁଲର ମହକ ସମଗ୍ର ବନକୁ ସୌରଭରେ ପୂର୍ଣ୍ଣ କରିଦେଲାଭଳି, ପ୍ରତିଭାଶାଳୀ ସାଧକ କେଦାରନାଥ ମହାପାତ୍ରଙ୍କର ଅବଦାନର ସୌରଭ କେବଳ ତାଙ୍କର ବଂଶ ବା ଭୁବନେଶ୍ୱରର ଗୌରବ ବଢ଼ାଇନାହିଁ, ବଢ଼ାଇଦେଇଛି ସମଗ୍ର ଉତ୍କଳର । ମଧୁବାବୁଙ୍କ ଭାଷାରେ ସେ ଆଜି ସମଗ୍ର ଓଡ଼ିଆ ଜାତିର ଜଣେ ସନ୍ତାନ । ଓଡ଼ିଶାର ସଂସ୍କୃତିପ୍ରେମୀ ଯୁବକ ସମାଜ ତାଙ୍କର ହଜାର ହଜାର ପୃଷ୍ଠା ବ୍ୟାପି ଜ୍ଞାନଗମ୍ଭୀର ରଚନା ପାଠ କରନ୍ତୁ ଏବଂ ତାଙ୍କର ଆଦର୍ଶରେ ଅନୁପ୍ରାଣୀତ ହୁଅନ୍ତୁ, ଏହାହିଁ ମୋର କାମନା ।



# ଗୁରୁଦେବ କେଦାରନାଥ

**ନୀଳମଣି ମିଶ୍ର**



ପିଲାଦିନରୁ କେଦାର ନାଥ ମହାପାତ୍ରଙ୍କ ଇତିହାସ ପୁସ୍ତକ ଓ ପତ୍ର ପତ୍ରିକାରେ ତାଙ୍କ ପ୍ରବନ୍ଧ ପାଠକରି ତାଙ୍କର ବହୁମୁଖୀ ପ୍ରତିଭା ସମ୍ବନ୍ଧରେ ଧାରଣା କରିଥିଲି । ସୌଭାଗ୍ୟକ୍ରମେ ତାଙ୍କର ସହକାରୀ ରୂପେ ରାଜ୍ୟ ସଂଗ୍ରହାଳୟରେ ଯୋଗଦେଲି-୧୯୫୭ ମସିହାରେ , ସେହିଦିନଠାରୁ ମୃତ୍ୟୁର ଅବ୍ୟବହିତ ଦିନ ପର୍ଯ୍ୟନ୍ତ ମୁଁ ଥିଲି ତାଙ୍କର ପ୍ରିୟତମ ଛାତ୍ର । ପ୍ରାଚୀନ ଗୁରୁକୁଳର ଆଚାର୍ଯ୍ୟମାନଙ୍କପରି ସ୍ୱର୍ଗତ କେଦାର ବାବୁ ଥିଲେ—ଜଣେ ଆଦର୍ଶ ଗୁରୁ । ଓଡ଼ିଶାର ଇତିହାସ, ପ୍ରତ୍ନତତ୍ତ୍ୱ, ତାଳପତ୍ର ପୋଥି ତଥା ଓଡ଼ିଆ ସାହିତ୍ୟ ସମ୍ପର୍କରେ ତାଙ୍କର ଧାରଣା ଥିଲା ଅତୁଳନୀୟ । ନିରାଡମ୍ବର ତଥା ନିଷ୍ଠାପର ଭାବରେ ସେ ପ୍ରତ୍ୟେକ ବିଷୟର ଅଧ୍ୟୟନ କରୁଥିଲେ ଏବଂ ଜିଜ୍ଞାସୁ ଗବେଷକ, ଛାତ୍ର ଏବଂ ସହଯୋଗୀମାନଙ୍କ ମନରେ ଧାରଣା ଜନ୍ମାଇ ପାରୁଥିଲେ । ଓଡ଼ିଆ ସାହିତ୍ୟର ବହୁ କବି, କୋବିଦମାନଙ୍କୁ ସେ ପୋଥି ଭଣ୍ଡାରର ଅନନ୍ତ ଗର୍ଭରୁ ଖୋଜି ଓଡ଼ିଶାର ପାଠକ-ପାଠିକାଙ୍କ ଆଗରେ ପରିବେଷଣ କରିଥିଲେ, ତାଙ୍କ ଗବେଷଣାର ମାର୍ଗ ଥିଲା—ଅଭିନବ । ପ୍ରତ୍ୟେକ ପ୍ରାଚୀନ କବିଙ୍କ କାଳନିରୂପଣ କରିବାରେ ସେ ବିଶେଷ ଦକ୍ଷତା ଦେଖାଇଛନ୍ତି । ଅକ୍ଷରର ପ୍ରାଚୀନତା, ପୋଥିରେ ବ୍ୟବହୃତ ପୂର୍ବବର୍ତ୍ତୀ କବିମାନଙ୍କ ଛନ୍ଦ, ବୃତ୍ତ ଓ ଅନ୍ୟାନ୍ୟ ପ୍ରାସଙ୍ଗିକ ଉପାଦାନକୁ ଭିତ୍ତି କରି ସେ ସହଜରେ କବିଙ୍କ କାଳ ନିରୂପଣ କରି ପାରୁଥିଲେ । ଓଡ଼ିଆ ସମାଲୋଚନା ସାହିତ୍ୟ, ଯାହାକି ସ୍ୱର୍ଗତଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ପ୍ରଥମେ ଶୃଙ୍ଖଳିତ ମାର୍ଗରେ ଅଗ୍ରଗତି କରିଥିଲା, କେଦାର ବାବୁ ସେହି ମାର୍ଗକୁ ଆହୁରି ସାବଲୀଳ ତଥା ଇତିହାସ ସମ୍ମତ କରିପାରିଥିଲେ ।

ସେ ପୂର୍ବତନ ଗଡ଼ଜାତ କଳାହାଣ୍ଡି ପ୍ରତ୍ନତତ୍ତ୍ୱ ବିଭାଗର ଅଧ୍ୟକ୍ଷ ଥିବା ବେଳେ ପ୍ରାୟ ସହସ୍ରାଧିକ ତାଳପତ୍ର ପୋଥି ସଂଗ୍ରହ କରି, ସେଥିରୁ ବହୁ ଅଜ୍ଞାତନାମା କବିଙ୍କ କାବ୍ୟକୃତିକୁ ଓଡ଼ିଆ ସାହିତ୍ୟଭଣ୍ଡାରକୁ ଅର୍ପଣ କରିଥିଲେ ।

୧୯୫୦ ମସିହାରୁ ସେ ରାଜ୍ୟସଂଗ୍ରହାଳୟର ପୋଥି ବିଭାଗର କ୍ୟୁରେଟର୍ ପଦରେ ରହି, ଓଡ଼ିଶାର ବିଭିନ୍ନ ଜିଲ୍ଲା ପରିଭ୍ରମଣ କରିବା ସଙ୍ଗେ ସଙ୍ଗେ ଆମ ପୂର୍ବ ପୁରୁଷଙ୍କ ଦ୍ୱାରା ଲିଖିତ ତଥା ସୁଦୂର ପଲ୍ଲୀ ଅଞ୍ଚଳରେ ଲୁକ୍କାୟିତ ବହୁ ସଂସ୍କୃତ ଓ ଓଡ଼ିଆ କବିଙ୍କୁ ସେ ଲୋକଲୋଚନର ଗୋଚରକୁ ଆଣି ପାରିଥିଲେ । ୧୯୫୮ ମସିହାରୁ ସେ ତାଳପତ୍ର ପୋଥି ଗୁଡ଼ିକର ବିବରଣାତ୍ମକ ତାଲିକା ପ୍ରସ୍ତୁତ କରି ସେଥିରେ ଯେଉଁ ଭୂମିକା ଲେଖିଛନ୍ତି, ତାହା ଭାରତୀୟ ଗବେଷଣା କ୍ଷେତ୍ରକୁ ଅତୁଳନୀୟ ଅବଦାନ । ସେ ନିଜର କାର୍ଯ୍ୟକାଳ ମଧ୍ୟରେ ଚାରିଖଣ୍ଡି ବିବରଣାତ୍ମକ ତାଲିକାରେ ଓଡ଼ିଶାର ସ୍ମୃତି ଓ ଧର୍ମଶାସ୍ତ୍ର, ସଂସ୍କୃତ କାବ୍ୟ, ନାଟକ, ଅଲଙ୍କାର ଓ ସଙ୍ଗୀତ, ସଂସ୍କୃତ ପୁରାଣ, ଜ୍ୟୋତିଷ ଓ ଗଣିତ ପୋଥିର ବିବରଣୀ ପ୍ରଦାନ କରିଛନ୍ତି । ଓଡ଼ିଶାର ସଂସ୍କୃତ ପଣ୍ଡିତମାନେ ନିଜପ୍ରତିଭା ବଳରେ ଯେଉଁ ଅମୂଲ୍ୟ ଗ୍ରନ୍ଥମାନ ପ୍ରକାଶ କରିଛନ୍ତି, ସେ ଗୁଡ଼ିକର ଗୁରୁତ୍ୱ ଅଦ୍ୟାପି ସର୍ବସାଧାରଣ ଗୋଚରକୁ ଆସି ନ ଥିଲା । ସ୍ୱର୍ଗତଃ କେଦାର ବାବୁ ପ୍ରତ୍ୟେକ ପୋଥିର ଗୁରୁତ୍ୱପୂର୍ଣ୍ଣ ବିଷୟ ବସ୍ତୁ ସମ୍ବନ୍ଧରେ ଆଲୋଚନା କରିବା ସଙ୍ଗେ ସଙ୍ଗେ 'ସଂସ୍କୃତ ସାହିତ୍ୟକୁ ଉତ୍କଳର ଦାନ' ସମ୍ପର୍କରେ ବହୁ ଉପାଦେୟ ତଥ୍ୟ ଗବେଷକମାନଙ୍କ ହାତରେ ଅର୍ପଣ କରିଯାଇଛନ୍ତି ।

ପୋଥିଗୁଡ଼ିକର ବିବରଣାତ୍ମକ ତାଲିକା ପ୍ରସ୍ତୁତ କରିବାରେ ତାଙ୍କର ଆଦର୍ଶ ଥିଲେ ସ୍ୱର୍ଗତଃ ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ କଲିକତାର ଏସିଆଟିକ୍ ସୋସାଇଟି, ମାନ୍ଦ୍ରାଜର ଓରିଏଣ୍ଟାଲ ମାନୁସ୍କ୍ରିପ୍ଟ ଲାଇବ୍ରେରୀରେ ଯେଉଁ ଧରଣର ବିଧିବଦ୍ଧ ଯୋଜନା ମୂଳକ କାର୍ଯ୍ୟ ଆରମ୍ଭ କରାଯାଇଥିଲା, କେଦାର ବାବୁ ଠିକ୍ ସେହି ଢାଞ୍ଚାରେ ଓଡ଼ିଶାର ତାଳପତ୍ର ପୋଥି ଗୁଡ଼ିକୁ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷଣ କରିଥିଲେ ।

ନିଜେ ଆଜୀବନ ଶ୍ୱାସ ରୋଗୀ ହୋଇଥିଲେ ହେଁ, କଠୋର ପରିଶ୍ରମ କରି ସେ ହଜାର ହଜାର ତାଳପତ୍ର ପୋଥି ପଢ଼ିଥିଲେ ଏବଂ ସେଥିରୁ ଉପାଦେୟ ତଥ୍ୟମାନ ସଂଗ୍ରହକରି ଗବେଷଣାରତ ଛାତ୍ର, ଶିକ୍ଷକ ତଥା ସହକର୍ମୀମାନଙ୍କୁ ଯୋଗାଇଥିଲେ । ବିଦ୍ୟାଦାନ, ଗବେଷଣାଲବ୍ଧ ନୂତନ ତଥ୍ୟ ପରିବେଷଣ ଦିଗରେ ସେ ଆଦୌ କାର୍ପଣ୍ୟ କରୁନଥିଲେ, ବରଂ ବିଭିନ୍ନ ଦିଗରୁ ଆଲୋଚନା କରି ଅନୁସନ୍ଧିତ୍ସୁମାନଙ୍କର ଜିଜ୍ଞାସା ପୂରଣ କରୁଥିଲେ ।

ଜଣେ ଉଦାର, ନିରଭିମାନୀ ଐତିହାସିକ ଭାବରେ କେଦାର ବାବୁଙ୍କ ସ୍ଥାନ ଉଚ୍ଚକୋଟୀର ଥିଲା । କୌଣସି ଗୋଟିଏ ନୂତନ ତଥ୍ୟ ସମ୍ବନ୍ଧରେ ତାଙ୍କୁ ଜଣାଇଦେଲେ; ସେ ଆନନ୍ଦରେ ଅଧୀର ହୋଇ ଉଠୁଥିଲେ ଏବଂ ନୂତନତାର ସନ୍ଧାନକାରୀ ଯେ କୌଣସି ସ୍ତରର ବ୍ୟକ୍ତି ହୁଅନ୍ତୁ ନା କାହିଁକି, ତାଙ୍କୁ ସମାଦର କରୁଥିଲେ । କେବଳ ସେତିକି ନୁହେଁ, ସେହି ନୂତନ ତଥ୍ୟର ମନ୍ତପୂରକ ଅନ୍ୟାନ୍ୟ ବହୁ ଐତିହାସିକ, ପ୍ରତ୍ନତାତ୍ତ୍ୱିକ ତଥ୍ୟମାନ ଯୋଗାଇ ଦେଇ ନୂଆ ଗବେଷକମାନଙ୍କ ମନରେ ଆତ୍ମ ଓ ବିଶ୍ୱାସ ସଞ୍ଚାର କରାଉଥିଲେ ।

ତାଙ୍କ ଗବେଷଣାର ପଦ୍ଧତି ଥିଲା— ସ୍ୱତନ୍ତ୍ର ଧରଣର । ତାଙ୍କ ମତ ଥିଲା—'ଯାହା ନ ଦେଖିବ ତାହା ଲେଖିବ ନାହିଁ, ପରଠାରୁ ନେଇ ନ ଲେଖିବ ନାହିଁ ।' ଏଣୁ କୌଣସି ଗୋଟିଏ ପ୍ରବନ୍ଧରେ ଗୋଟିଏ ଶ୍ଳୋକ କିମ୍ବା ପଦ୍ୟଟିଏ ଉଦାହରଣ ସ୍ୱରୂପ ଉଲ୍ଲେଖ କରିବା ଆବଶ୍ୟକ ହେଲେ ସେ ନିଜେ ଶ୍ଳୋକଟିକୁ ମୂଳରଚନାରୁ ନ ଦେଖି କେବେହେଲେ ଅନ୍ୟର ଲେଖା ଉପରେ ନିର୍ଭର କରୁନଥିଲେ । ସେହିପରି ତାଙ୍କ ଗବେଷଣାପୂର୍ଣ୍ଣ ଲେଖା ଓ ପୁସ୍ତକରେ ଯେଉଁ ପାଦଟୀକା ( Footnotes ) ରହିଛି, ସେଗୁଡ଼ିକୁ ତନ୍ନ ତନ୍ନ କରି ପରୀକ୍ଷା କରିବା ପରେ, ନିଜେ ବ୍ୟବହାର କରୁଥିଲେ । ସେଇଥିପାଇଁ ଗବେଷକମାନେ କେଦାର ବାବୁଙ୍କ ଲେଖା ଉପରେ ଆସ୍ଥା ସ୍ଥାପନ କରନ୍ତି ଏବଂ ତାଙ୍କୁ ଗୁରୁତୁଲ୍ୟ ସମ୍ମାନ କରନ୍ତି ।

ବହୁଦିନରୁ ଜୟଦେବ ବୀରଭୂମ ଜିଲ୍ଲାର ଅଜୟ ନଦୀ ତଟବର୍ତ୍ତୀ ତଥାକଥିତ କେନ୍ଦୁବିଲ୍ୱର ଅଧିବାସୀ ବୋଲି କେତେକ ଭାରତୀୟ ଗବେଷକମାନଙ୍କ ମହଲରେ ଗୋଟିଏ ଭ୍ରମଧାରଣା ରହି ଆସିଛି । କେଦାର ବାବୁ ଦୀର୍ଘ ଦିନ ଧରି ସେ ସମ୍ବନ୍ଧରେ ବହୁ ପୋଥି ତଥା ପ୍ରକାଶିତ ପୁସ୍ତକ ପାଠକରି ଜୟଦେବଙ୍କୁ ଉତ୍କଳୀୟ ବୋଲି ସର୍ବପ୍ରଥମେ ଓଡ଼ିଶା ହିଷ୍ଟୋରିକାଲ ରିସର୍ଚ୍ଚ ଜର୍ଣ୍ଣାଲ'ରେ ଗୋଟିଏ ଇଂରାଜୀ ପ୍ରବନ୍ଧ ୧୯୫୯ ମସିହାରେ ପ୍ରକାଶ କରିଥିଲେ । ସେହିବର୍ଷ ଭୁବନେଶ୍ୱରଠାରେ 'ଭାରତୀୟ ପ୍ରାଚ୍ୟବିଦ୍ୟା ସମ୍ମେଳନ' ଅନୁଷ୍ଠିତ ହୋଇଥିଲା । ପ୍ରଖ୍ୟାତ ଗବେଷକ ସ୍ୱର୍ଗତ ବି. ବି. ମିରାସି, ଦାଣ୍ଡେକର ଓ ଡ. ରାଘବାନ୍ ପ୍ରଭୃତି ବିଦ୍ୱାନମାନେ କେଦାର ବାବୁଙ୍କର ସେହି ଲେଖାପଢ଼ି ନିଜ ନିଜର ଧାରଣା ପରିବର୍ତ୍ତନ କରିଥିଲେ । ପରେ କେଦାର ବାବୁ ତାଙ୍କର ସେହି ଜୟଦେବ ଶୀର୍ଷକ ପ୍ରବନ୍ଧଟିକୁ ସଂସ୍କୃତ ପୋଥି ବିବରଣାତ୍ମକ ତାଲିକା (ଦ୍ୱିତୀୟ ଖଣ୍ଡ)ର ଭୂମିକାରେ ସନ୍ନିବେଶିତ କରି ସର୍ବସାଧାରଣଙ୍କ ଦ୍ୱାରା ପ୍ରଶଂସିତ ହୋଇଥିଲେ । ଜୟଦେବ ଉତ୍କଳୀୟତା ସମ୍ବନ୍ଧରେ ପ୍ରତ୍ନତତ୍ତ୍ୱ, ମୂର୍ତ୍ତିତତ୍ତ୍ୱ, ଲିପିତତ୍ତ୍ୱ, ଅଭିଲେଖ, ପ୍ରାଚୀନ ପୋଥି, ଅନ୍ୟ ମହାକାବ୍ୟ, ତଥା ଉତ୍ତର ଭାରତର ବାହାରରେ ପ୍ରଚଳିତ କିମ୍ବଦନ୍ତୀ ଏବଂ ରଚିତ ଗ୍ରନ୍ଥ ସମୂହରୁ ପ୍ରମାଣମାନ ଉପସ୍ଥାପିତ କରିଛନ୍ତି । ପ୍ରାଚୀନଦୀ ତଟବର୍ତ୍ତୀ କେନ୍ଦୁବିଲ୍ୱ ଗ୍ରାମରେ ପ୍ରାଚୀନ ମନ୍ଦିର, ମାଧବ ବିଗ୍ରହ ପ୍ରଭୃତି ଉଦ୍ଧାର କରି ସେଠାରେ ଏକ ସଂଗ୍ରହାଳୟ ପ୍ରତିଷ୍ଠା କରିଛନ୍ତି । ପ୍ରତିବର୍ଷ ଅକ୍ଷୟ ତୃତୀୟାରେ ଆଞ୍ଚଳିକ କିମ୍ବଦନ୍ତୀ ଅନୁସାରେ, କେନ୍ଦୁଲିରେ ଜୟଦେବଙ୍କ ଜୟନ୍ତୀ ପାଳିତ ହେଉଛି । କେଦାର ବାବୁ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗର ଅଧୀକ୍ଷକ ଦାୟିତ୍ୱରେ ରହି ଜୟଦେବଙ୍କ ସମ୍ବନ୍ଧରେ ବହୁ ଅଜ୍ଞାତ ତଥ୍ୟ ପରିବେଷଣ କରିବା ସଙ୍ଗେ ସଙ୍ଗେ ଭାରତର ବିଶିଷ୍ଟ ବିଦ୍ୱାନ ଗବେଷକମାନଙ୍କୁ ଜୟଦେବଙ୍କ ଜନ୍ମପୀଠକୁ ନେଇ ସେଠାକାର ପ୍ରାଚୀନତା ସମ୍ବନ୍ଧରେ ହୃଦୟଙ୍ଗମ କରାଉଥିଲେ । ପରେ କେଦାର ବାବୁ ସମସ୍ତପ୍ରକାର ଜୟଦେବ ସମ୍ବନ୍ଧୀୟ ତଥ୍ୟକୁ ଏକତ୍ରିତ କରି ଶ୍ରୀ ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ ଶୀର୍ଷକ ଖଣ୍ଡିଏ ପ୍ରାମାଣିକ ଗ୍ରନ୍ଥ ରଚନା କରିଛନ୍ତି । ଏହି ପୁସ୍ତକରେ କେବଳ ଜୟଦେବଙ୍କ ଜନ୍ମପୀଠ ଏବଂ ଲୀଳାଭୂମି ସମ୍ବନ୍ଧରେ ନୁହେଁ, ଉତ୍କଳରେ ଭାଗବତ ଧର୍ମ, ମାଧବ ଉପାସନା, ରାଧାକୃଷ୍ଣ ତତ୍ତ୍ୱର ପ୍ରଚାର, ଗୀତ ଗୋବିନ୍ଦର ବିଂଶାଧିକ ଅନୁକୃତି, ସର୍ବ ଭାରତୀୟ ସ୍ତରରେ ଗୀତଗୋବିନ୍ଦର ପ୍ରଭାବ ସମ୍ପର୍କରେ ପ୍ରାମାଣିକ ତଥ୍ୟମାନ ପରିବେଷଣ କରିଛନ୍ତି ।

ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗର ଅଧୀକ୍ଷକ ଭାବରେ ସେ ରାଜ୍ୟର ବିଭିନ୍ନ ଜୀର୍ଣ୍ଣ ମନ୍ଦିରର ସଂସ୍କାର ଲାଗି ସୀମିତ ସମ୍ବଳ ମଧ୍ୟରେ ବହୁଚେଷ୍ଟା କରିଥିଲେ । ଭୁବନେଶ୍ୱରସ୍ଥିତ ବିନ୍ଦୁସାଗର ପୁଷ୍କରିଣୀର ଦକ୍ଷିଣ ପଟେ ଥିବା ମୋହିନୀ ଦେବୀଙ୍କର ପ୍ରାଚୀନ ମନ୍ଦିରର ଜୀର୍ଣ୍ଣ ସଂସ୍କାର କାର୍ଯ୍ୟ ସେ ସର୍ବପ୍ରଥମେ ଆରମ୍ଭ କରିଥିଲେ । ତତ୍ପରେ ଭୁବନେଶ୍ୱରର ରାମେଶ୍ୱର, ଲକ୍ଷ୍ମଣେଶ୍ୱର, ଭରତେଶ୍ୱର, ସ୍ୱର୍ଣ୍ଣଜାଳେଶ୍ୱର, ସୋମେଶ୍ୱର, ତଥା ଓଡ଼ିଶାର ଅନ୍ୟାନ୍ୟ ବହୁ ଅଞ୍ଚଳର କେତୋଟି ପ୍ରସିଦ୍ଧ ମନ୍ଦିରର ଜୀର୍ଣ୍ଣ ସଂସ୍କାର କରାଇ ପ୍ରାଚୀନ କୀର୍ତ୍ତି ଗୁଡ଼ିକୁ ଅକ୍ଷୁର୍ଣ୍ଣ ରଖିବା ଲାଗି ବହୁ ଯତ୍ନ କରିଥିଲେ । ସେ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗର ପ୍ରଥମ ଅଧୀକ୍ଷକ ଭାବରେ ନିଜର ଭଗ୍ନ ସ୍ୱାସ୍ଥ୍ୟ ମଧ୍ୟରେ ଅକ୍ଳାନ୍ତ ପରିଶ୍ରମ କରି ସେ ଯେଉଁ ଜାତୀୟ ପରମ୍ପରା ସୃଷ୍ଟି କରି ଯାଇଛନ୍ତି । ତାହା ଚିରଦିନ ଲାଗି ଆଗାମୀ ଯୁଗର ପ୍ରତ୍ନତତ୍ତ୍ୱବିତ୍‌ଙ୍କ ପାଇଁ ପଥପ୍ରଦର୍ଶକ ହୋଇ ରହିବ ।

ଐତିହାସିକ ଭାବରେ କେଦାର ବାବୁ ବହୁଦିନରୁ ଉତ୍କଳର ପୁରପଲ୍ଲୀରେ ସୁପରିଚିତ । ଖୋର୍ଦ୍ଧା ହାଇସ୍କୁଲ, ବାଙ୍କୀ ହାଇସ୍କୁଲ ପୁରୁଷୋତ୍ତମପୁର ସ୍କୁଲ ଓ ସମ୍ବଲପୁର ଜିଲ୍ଲା ସ୍କୁଲରେ ଶିକ୍ଷକତା କରୁଥିବା ବେଳେ ଓଡ଼ିଆରେ ଇତିହାସ ପୁସ୍ତକର ଅଭାବ ବିଷୟ ଅନୁଭବ କରିଥିଲେ । ଓଡ଼ିଆ ଭାଷାରେ ଇତିହାସ ଲେଖିବା ଆଦୌ ସମ୍ଭବ ନୁହେଁ ବୋଲି କେତେଜଣ ଅଣଓଡ଼ିଆ ଶିକ୍ଷକଙ୍କ ଉଦ୍ଦେଶ୍ୟପ୍ରଣୋଦିତ ମନ୍ତବ୍ୟର ଆହ୍ୱାନରେ ସେ ପଞ୍ଚମ ଶ୍ରେଣୀଠାରୁ ଆରମ୍ଭ କରି ମାଟ୍ରିକ୍ ଶିକ୍ଷା ପର୍ଯ୍ୟନ୍ତ ତିନିଖଣ୍ଡ ଇତିହାସ ପୁସ୍ତକ ରଚନା କରିଥିଲେ । ଅଭିନବ ଭାରତୀୟ ଇତିହାସ, ମାଟ୍ରିକ୍ ଇଂଲଣ୍ଡ ଇତିହାସ ବହୁବର୍ଷ ପର୍ଯ୍ୟନ୍ତ ଓଡ଼ିଶାରେ ପାଠ୍ୟ ପୁସ୍ତକ ରୂପେ ପ୍ରଚଳିତ ଥିଲା । ସେ ପୁସ୍ତକ ତିନିଖଣ୍ଡି ତାଙ୍କୁ ଉତ୍କଳର ପୁରପଲ୍ଲୀରେ ବିଶେଷ ଭାବରେ ପରିଚିତ କରାଇଥିଲା ।

ଡକ୍ଟର ମହତାବ ଓଡ଼ିଶାର ଏକ ପୂର୍ଣ୍ଣାଙ୍ଗ ଇତିହାସ ଲେଖିବାବେଳେ କେଦାରନାଥ ବାବୁଙ୍କର ସାହାଯ୍ୟ ନେଇଥିଲେ । ସେ ବହୁ ପ୍ରାମାଣିକ ତଥ୍ୟ ଯୋଗାଇ ଓଡ଼ିଶା ଇତିହାସଟିକୁ ଏକ ପ୍ରାମାଣିକ ଗ୍ରନ୍ଥରୂପେ ପରିଣତ କରାଇଥିଲେ । ଓଡ଼ିଶା ଇତିହାସର ଧାରାକୁ ଅବିଚ୍ଛିନ୍ନ କରିବା ଉଦ୍ଦେଶ୍ୟରେ ଇତିହାସର ଅନ୍ଧକାର ଯୁଗ ସମ୍ବନ୍ଧରେ ସେ ଗବେଷଣା ଚଳାଇଥିଲେ । ଏବଂ ମୃତ୍ୟୁର ଅବ୍ୟବହିତ ସମୟ ପର୍ଯ୍ୟନ୍ତ ସେ ଓଡ଼ିଶାର ପୂର୍ଣ୍ଣାଙ୍ଗ ଇତିହାସ ଲେଖିବାରେ ଯତ୍ନଶୀଳ ଥିଲେ ।

କେଦାର ବାବୁ କଳାହାଣ୍ଡି ରାଜ୍ୟର ରାଜା ପ୍ରତାପ କେଶରୀ ଦେଓଙ୍କ ଦ୍ୱାରା କଳାହାଣ୍ଡିର ପ୍ରତ୍ନତତ୍ତ୍ୱ ବିଭାଗ ଦାୟିତ୍ୱରେ ବହୁଦିନ ଅଧିଷ୍ଠାପିତ ହୋଇଥିଲେ । ଘନ ଅରଣ୍ୟାନୀପୂର୍ଣ୍ଣ କଳାହାଣ୍ଡି ଜିଲ୍ଲାର ବହୁ ଦୁର୍ଗମ ଅଞ୍ଚଳ ଗସ୍ତ କରି ସେ ବିଭିନ୍ନ ଉପାଦେୟ ବସ୍ତୁମାନ ସଂଗ୍ରହ କରି ଭବାନୀପାଟଣା ମିଉଜିୟମରେ ସଂରକ୍ଷଣ କରିଥିଲେ । ମହାରାଜା ପ୍ରତାପକେଶରୀ ଦେଓଙ୍କ ଆନୁକୂଲ୍ୟରେ କଳାହାଣ୍ଡି ଜିଲ୍ଲାର ବେଲଖଣ୍ଡି ଗ୍ରାମର ସପ୍ତମାତୃକା ମନ୍ଦିରର ଜୀର୍ଣ୍ଣ ସଂସ୍କାର କରାଇବା ସଙ୍ଗେ ସଙ୍ଗେ ସେଠାକାର ଖୋଦନରୁ ବହୁ ଜୀର୍ଣ୍ଣ ମୂର୍ତ୍ତି ସଂଗ୍ରହ କରିଥିଲେ ଏବଂ ସେଗୁଡ଼ିକୁ ଗୋଟିଏ ମିଉଜିୟମରେ ସଂରକ୍ଷଣ କରିଥିଲେ । ସେତିକିବେଳେ ବଲାଙ୍ଗୀର ଓ କଳାହାଣ୍ଡି ମହାରାଜାଙ୍କ ପ୍ରଚେଷ୍ଟାରେ କଳିଙ୍ଗ ହିଷ୍ଟୋରିକାଲ ରିସର୍ଚ୍ଚ ସୋସାଇଟି ପ୍ରତିଷ୍ଠିତ ହୋଇଥିଲା । ସେ ସେଥିରେ ସକ୍ରିୟ ଅଂଶ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଉକ୍ତ ଅନୁଷ୍ଠାନ ପକ୍ଷରୁ ପ୍ରକାଶ ପାଉଥିବା ଗବେଷଣା ମୂଳକ ପତ୍ରିକାର ସମ୍ପାଦନା ଦାୟିତ୍ୱରେ ରହିଥିଲେ ।

କେଦାର ବାବୁ ଖ୍ରୀ ୧୯୩୦ ମସିହା ଠାରୁ ମୃତ୍ୟୁର ପୂର୍ବଦିନ ପର୍ଯ୍ୟନ୍ତ ଚର୍ଚ୍ଚର ଅଧ୍ୟୟନ ଓ ଗବେଷଣାମୂଳକ ଲେଖାମାନ ଲେଖିବାରେ ତଲ୍ଲୀନ ଥିଲେ । ଇଂରାଜୀ ଓ ଓଡ଼ିଆରେ ଲିଖିତ ତାଙ୍କର ଶହ ଶହ ପ୍ରବନ୍ଧ ସମାଜ, ପ୍ରଜାତନ୍ତ୍ର, ମାତୃଭୂମି, କଳିଙ୍ଗ, ଦୈନିକ ଆଶା ପ୍ରଭୃତି ଦୈନିକ ପତ୍ରିକାରେ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ଉତ୍କଳ ସାହିତ୍ୟ, ନବଭାରତ, ସହକାର, ଝଙ୍କାର, ଶଙ୍ଖ, ଚତୁରଙ୍ଗ ପ୍ରଭୃତି ଗବେଷଣାମୂଳକ ପତ୍ରିକାରେ ପ୍ରକାଶ ପାଇଛି । ରାଜ୍ୟ ସଂଗ୍ରହାଳୟ ପକ୍ଷରୁ ପ୍ରକାଶିତ ଓଡ଼ିଶା ହିଷ୍ଟୋରିକାଲ ରିସର୍ଚ୍ଚ ଜର୍ଣ୍ଣାଲ, ଜୟଦେବ ସ୍ମରଣିକା ଅମୃତବଜାର ପ୍ରଭୃତି ଇଂରାଜୀ ପତ୍ରିକାରେ ମଧ୍ୟ ତାଙ୍କ ଇଂରାଜୀ ପ୍ରବନ୍ଧଗୁଡ଼ିକ ପ୍ରକାଶିତ ହୋଇଛି । ପୂର୍ବଭାରତରେ ଶ୍ରୀ ଜଗନ୍ନାଥ ମନ୍ଦିର ସମ୍ପର୍କୀୟ ତାଙ୍କର ଖଣ୍ଡିଏ ଇଂରାଜୀ ବହି ପାଠକମାନଙ୍କର ଗୋଚରକୁ ଆସିଛି । ତଦ୍‌ବ୍ୟତୀତ ଖାରବେଳ ଧଉଳିର ଇତିହାସ । ଖୁରୁଧା ଇତିହାସ ପ୍ରଭୃତି କେଇଖଣ୍ଡ ଉଚ୍ଚକୋଟୀର ଗବେଷଣାମୂଳକ ପୁସ୍ତକ ତାଙ୍କ ଲେଖନୀରୁ ନିଃସୃତ ହୋଇଛି । ସେ ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କରିବାପରେ ରାଜ୍ୟ ସରକାରଙ୍କ ଦ୍ୱାରା ଓଡ଼ିଶା ଇତିହାସର ଏକ ଅଜ୍ଞାତ ଅଧ୍ୟାୟର ସଙ୍କଳନ ଲାଗି ନିଯୁକ୍ତି ପାଇଥିଲେ ଏବଂ ଅନ୍ତିମ ସମୟ ପର୍ଯ୍ୟନ୍ତ କେଦାର ବାବୁ ସେହି କାର୍ଯ୍ୟରେ ନିଷ୍ଠାର ସହିତ ସମୟ ଅତିବାହିତ କରୁଥିଲେ । ସେ ବୃଦ୍ଧ ବୟସରେ ପ୍ରାୟ ପ୍ରତିଦିନ ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ଓ ଓଡ଼ିଶା ଅଭିଲେଖାଗାରର ପାଠାଗାରକୁ ପଢ଼ିବାକୁ ଆସୁଥିଲେ ଏବଂ ଅନେକ ସମୟରେ ତାଙ୍କର ଦ୍ୱାରା ପ୍ରତିଷ୍ଠିତ ରାଜ୍ୟ ସଂଗ୍ରହାଳୟର ତାଳପତ୍ର ପୋଥି ବିଭାଗରେ ବସି ନୂତନ ସଂଗୃହୀତ ପୋଥି ଗୁଡ଼ିକରୁ ତଥ୍ୟମାନ ସଂଗ୍ରହ କରୁଥିଲେ ।

ଓଡ଼ିଶାର ମହାନ୍ ବରିଷ୍ଠ ଉତ୍କଳୀୟ ଗବେଷଣାମାନଙ୍କ କର୍ଣ୍ଣଧାର ଉତ୍କଳଜନନୀଙ୍କର ସୁଯୋଗ୍ୟ ସନ୍ତାନ କେଦାର ବାବୁ ଗତ ତା ୨୦ । ୪ । ୧୯୮୧ ମସିହା ସୋମବାର ପୂର୍ବାହ୍ଣରେ ଇହଲୀଳା ତ୍ୟାଗକରି ପରଲୋକ ଯାତ୍ରା କଲେ । ସେ ଆଜି ଆମ ଆଗରେ ଆଉ ନାହାନ୍ତି କିନ୍ତୁ ତାଙ୍କର ନିଷ୍ଠା, କର୍ତ୍ତବ୍ୟପରାୟଣତା, ନୂତନ ତଥ୍ୟ ସଂଗ୍ରହରେ ଏକାଗ୍ରତା ଏବଂ ଗବେଷଣାଲବ୍ଧ ତଥ୍ୟ ଗୁଡ଼ିକୁ ଆଗ୍ରହୀ, ଜିଜ୍ଞାସୁ ଗବେଷଣାରତ ବିଦ୍ୱାନମାନଙ୍କ ମଧ୍ୟରେ ପରିବେଷଣ କରିବାର ସହୃଦୟତା ଆମର ଆଦର୍ଶ ହୋଇ ରହିବ । ତାଙ୍କ ପରି ଏକ ସୁଯୋଗ୍ୟ ବ୍ୟକ୍ତିଙ୍କୁ ହରାଇ ଆମେ ବିଚଳିତ ହୋଇପଡ଼ିଛୁ । ଆଜି ସମସ୍ତଙ୍କ ମୁହଁରୁ ଗୋଟିଏ ବାକ୍ୟ ଶୁଣାଯାଉଛି —"ଆହା, ଗୁରୁଦେବ ଚାଲିଗଲେ" ।

—:o:—

# ବନ୍ଧୁ ସ୍ମରଣେ

**ଶ୍ରୀ ସୁଶୀଳ ଚନ୍ଦ୍ର ଦେ**

କେଦାରବାବୁ ଆଉ ନାହାନ୍ତି । ସେ ଇହଧାମର ସାଧନା ସମାପ୍ତ କରି ଚାଲିଗଲେ ଅପର ଧାମକୁ । ଆମ ପାଇଁ ରହିଁ ଯାଇଛନ୍ତି ତାଙ୍କର ସମସ୍ତ ଜୀବନର ସାଧନାର ଫଳ, ବହୁମୁଖୀ ଐତିହାସିକ ଗବେଷଣା ପ୍ରସୂତ ବହୁ ତଥ୍ୟ । ସେହି ସବୁ ଐତିହାସିକ ତଥ୍ୟ ଓଡ଼ିଶାର ଇତିହାସକୁ ସମୃଦ୍ଧ କରିଛି । ତାଙ୍କର ଜୀବନବ୍ୟାପୀ ଐତିହାସିକ ଗବେଷଣାର ସାଧନା ବର୍ତ୍ତମାନ ଓ ଭବିଷ୍ୟତର ଐତିହାସିକମାନଙ୍କୁ ନିଶ୍ଚୟ ପ୍ରେରଣା ଯୋଗାଇବ ।

୰କେଦାର ମହାପାତ୍ର ମୋର ସମବୟସ । ଅଠର ବର୍ଷକାଳ ପରସ୍ପର ସହକର୍ମୀ ହିସାବରେ କାର୍ଯ୍ୟକରି ଆମେ ଦୁହେଁ ଏକ ଦିନରେ ଅବସର ଗ୍ରହଣ କରିଥିଲୁଁ । ଏହି ଦୀର୍ଘ ସମୟ ଏକ ସଙ୍ଗରେ କାର୍ଯ୍ୟ କରିଥିବାରୁ ତାଙ୍କୁ ଭଲ ଭାବରେ ଜାଣିବାର ସୁଯୋଗ ମୁଁ ପାଇଥିଲି । ଶୈଶବାବସ୍ଥାରୁ ମନ୍ଦିର-ନଗରୀ ଭୁବନେଶ୍ୱରର ପ୍ରତ୍ନତାତ୍ତ୍ୱିକ ପରିବେଶରେ ବଢ଼ିଥିବାରୁ ତାଙ୍କର ମନ ଇତିହାସ ଓ ପ୍ରତ୍ନତତ୍ତ୍ୱ ପ୍ରତି ଆକୃଷ୍ଟ ହୋଇଥିଲା । ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ଶୈଶବର ସେହି ଆକର୍ଷଣ କ୍ରମେ ଏକ ଦୁର୍ଦ୍ଦମନୀୟ ଇଚ୍ଛାରେ ରୂପାୟିତ ହୋଇଥିଲା । ସେ ସେହି ଆକାଂକ୍ଷାର ସଫଳ ରୂପାୟନ ପାଇଁ ବି. ଏ. ପାଠ୍ୟକ୍ରମରେ ଇତିହାସ ଅନର୍ସ ନେଇଥିଲେ ଓ ସେହି ବିଷୟରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇଥିଲେ । ସେ ୰ ପ୍ରଫେସର ନିର୍ମଳ ବେନାର୍ଜିଙ୍କର ପ୍ରିୟ ଛାତ୍ରଥିଲେ । ୰ ବେନାର୍ଜି ସେ ସମୟରେ ଓଡ଼ିଶା ସଂଗ୍ରହାଳୟର ସ୍ଥାପନ କରିବାପାଇଁ ପ୍ରାୟ ନିଜକୁ ଉତ୍ସର୍ଗ କରିଥିଲେ । କେଦାର ବାବୁ ତାଙ୍କୁ ଏହି କାର୍ଯ୍ୟରେ ବହୁତ ସାହାଯ୍ୟ କରିଥିଲେ । ଓଡ଼ିଶା ସଂଗ୍ରହାଳୟର ଅନେକ ମୂର୍ତ୍ତି ଇତ୍ୟାଦି ବହୁ ପ୍ରତ୍ନତାତ୍ତ୍ୱିକ ବସ୍ତୁ କେଦାର ବାବୁଙ୍କ ଯତ୍ନ ଓ ଚେଷ୍ଟାରେ ସଂଗୃହୀତ ହୋଇଥିଲା । ଏହିସବୁ କ୍ରିୟା କଳାପ ତାଙ୍କର ଆଶୈଶବ ଇତିହାସ ପ୍ରତି ଆକର୍ଷଣକୁ ଦୃଢ଼ କରିଥିଲା ଓ ତାଙ୍କର ପରବର୍ତ୍ତୀ ଜୀବନର ସାଧନାର ପଥ ନିର୍ଦ୍ଦିଷ୍ଟ କରିଥିଲା ।

କେଦାର ବାବୁ ତାଙ୍କର କର୍ମମୟ ଜୀବନର ପ୍ରାରମ୍ଭରେ କିଛିଦିନ ପାଇଁ ଶିକ୍ଷକତା କରିଥିଲେ । ପରେ ସେ ପ୍ରାକ୍ତନ କଳାହାଣ୍ଡି ଦେଶୀୟ ରାଜ୍ୟରେ ପ୍ରତ୍ନତତ୍ତ୍ୱ ବିଭାଗର ମୁଖ୍ୟ ରୂପେ ନିଯୁକ୍ତି ପାଇଥିଲେ । ସେଠାରେ ସେ ତାଙ୍କର ଇତିହାସ ସାଧନାର ସୁଯୋଗ ପାଇ ସେଥିରେ ସେ ବ୍ରତୀ ହେଲେ । କଳାହାଣ୍ଡି ରାଜ୍ୟର ଅନେକ ପ୍ରତ୍ନତାତ୍ତ୍ୱିକ ବସ୍ତୁ ସେ ଆବିଷ୍କାର କରି ଭବାନୀପାଟଣାଠାରେ ଏକ ସଂଗ୍ରହାଳୟ ସ୍ଥାପନ କରିଥିଲେ ।

ଓଡ଼ିଶାର ଦେଶୀୟ ରାଜ୍ୟମାନଙ୍କର ଓଡ଼ିଶା ସହିତ ମିଶ୍ରଣ ପରେ ଇତିହାସ ଗବେଷଣା ପାଇଁ ଓଡ଼ିଶାର ତତ୍କାଳୀନ ସଂଗ୍ରହାଳୟ ଓ ଅଭିଲେଖାଗାରକୁ ନେଇ ୧୯୪୯ ମସିହାରେ ଓଡ଼ିଶା ସରକାର ଏକ ଗବେଷଣା ସଂସ୍ଥା ( Research Section ) ସ୍ଥାପନ କଲେ । ସେଥିରେ ୰ପରମାନନ୍ଦ ଆଚାର୍ଯ୍ୟ, ୰କେଦାର ମହାପାତ୍ର ଓ ଶ୍ରୀ ସତ୍ୟନାରାୟଣ ରାଜଗୁରୁ କ୍ୟୁରେଟର ହିସାବରେ ଯୋଗ ଦେଲେ । ଲେଖକ ଅଭିଲେଖାଗାର ଓ ଶ୍ରୀ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ସଂଗ୍ରହାଳୟର ଦାୟିତ୍ୱରେ ସେହି ସଂସ୍ଥାରେ ଯୋଗ ଦେଲେ । ୰ପରମାନନ୍ଦ ଆଚାର୍ଯ୍ୟ ସେହି ସଂସ୍ଥାର ମୁଖ୍ୟ ହେଲେ । କିଛି ଦିନ ପରେ ଶ୍ରୀ ପାଣିଗ୍ରାହୀ ସେହି ସଂସ୍ଥା ଛାଡ଼ି ତାଙ୍କର ଇତିହାସ ଶିକ୍ଷକତା କାର୍ଯ୍ୟରେ ଯୋଗ ଦେଲେ ।

୧୯୪୯ରୁ ୧୯୬୮ ମସିହା ପର୍ଯ୍ୟନ୍ତ ମୁଁ ଓ ୰କେଦାର ମହାପାତ୍ର ସହକର୍ମୀ ଥିଲୁଁ । ସେହି ସମୟରେ ସେ ନିଜକୁ ଐତିହାସିକ ଗବେଷଣାରେ ଉତ୍ସର୍ଗ କରିଥିଲେ । ସେ ପ୍ରାଚୀନ ପୋଥି ପ୍ରତି ବିଶେଷ ଆକୃଷ୍ଟ ହୋଇଥିଲେ ଓ ସେହି ପୋଥିମାନଙ୍କ ଭିତ୍ତିରେ ପ୍ରକାଶିତ ଗବେଷଣାମୂଳକ ବହୁ ପ୍ରବନ୍ଧ ଓ ପୁସ୍ତକ ତାଙ୍କର ଓଡ଼ିଶା-ଇତିହାସକୁ ଏକ ନୂତନ ଅବଦାନ । ପୋଥି ଛଡ଼ା ସେ ଅନ୍ୟାନ୍ୟ ବହୁ ବିଷୟରେ ଗବେଷଣା କରି ପ୍ରବନ୍ଧମାନ ପ୍ରକାଶ କରିଥିଲେ । ତାଙ୍କର ବହୁମୁଖୀ ଗବେଷଣା ଓଡ଼ିଶାର ଇତିହାସକୁ ଏକ ଗୁରୁତ୍ୱପୂର୍ଣ୍ଣ ଅବଦାନ ।

୰କେଦାର ବାବୁ ଚାଲି ଗଲେ, କିନ୍ତୁ ସେ ଯେଉଁ ରତ୍ନ ରଖି ଯାଇଛନ୍ତି ତାହା ଯେ କେବଳ ତାଙ୍କର ସ୍ମୃତିକୁ ଜୀବିତ ରଖିବ ତାହା ନୁହେଁ, ଭବିଷ୍ୟତରେ ଗବେଷକମାନଙ୍କୁ ପ୍ରେରଣା ଓ ଦିଗ୍‌ଦର୍ଶନ ଯୋଗାଇବ ।

# ଓଡ଼ିଆ ସାହିତ୍ୟରେ ଐତିହାସିକ କେଦାରନାଥ

ଡକ୍ଟର ନଟବର ସାମନ୍ତରାୟ

ଏ ଦେଶର ଐତିହାସିକମାନେ ସାଧାରଣତଃ ଇତିହାସକୁ ସେମାନଙ୍କ ଗବେଷଣାର ମୁଖ୍ୟ ଆଧାର ସ୍ୱରୂପେ ଗ୍ରହଣ କରିନେଇ ଥିବାରୁ ଓଡ଼ିଆ ସାହିତ୍ୟ ପ୍ରତି ବିଶେଷ ଦୃଷ୍ଟିପାତ କରିବାର ଅବକାଶ ପାଇ ନଥାନ୍ତି । କିନ୍ତୁ ଐତିହାସିକ କେଦାରନାଥ ମହାପାତ୍ର ଏ କ୍ଷେତ୍ରରେ ସଂପୂର୍ଣ୍ଣ ବ୍ୟତିକ୍ରମ ମାତ୍ର । ଇତିହାସ ସହିତ ଓଡ଼ିଆ ସାହିତ୍ୟ ଉପରେ ସମାନ ପ୍ରାଧାନ୍ୟ ଦେଇ ଦୀର୍ଘ ଅର୍ଦ୍ଧ ଶତାବ୍ଦୀ କାଳ ସେ ଯେଉଁ ସାତ୍ତ୍ୱିକ ସାଧନା କରିଯାଇଅଛନ୍ତି ଏ ଦେଶର ଇତିହାସ ଓ ସାହିତ୍ୟ ରାଜ୍ୟରେ ତାହା ସଂପୂର୍ଣ୍ଣ ଅନନ୍ୟ ସାଧାରଣ । ହାଇସ୍କୁଲ ପରୀକ୍ଷାର ସିଲବସ ଅନୁସୃତ କେତୋଟି ଇତିହାସ ପୁସ୍ତକ ପାଇଁ ସେ ବହୁ ବର୍ଷ ଧରି ଲକ୍ଷ ଲକ୍ଷ ଛାତ୍ର ଛାତ୍ରୀଙ୍କ ନିକଟରେ ସୁପରିଚିତ ହୋଇ ଆସୁଥିଲେହେଁ ଇତିହାସ ଓ ସାହିତ୍ୟର ଗବେଷଣା କ୍ଷେତ୍ରରେହିଁ ତାହାଙ୍କ ସାଧନା ଓ ସିଦ୍ଧିର ଅକ୍ଷୟ ମୁଦ୍ରା ସେ ରଖିଦେଇ ଯାଇଅଛନ୍ତି । ଯେଉଁ ଇତିହାସ ଓ ସାହିତ୍ୟକୁ ନେଇ ଅର୍ଦ୍ଧ ଶତାବ୍ଦୀକାଳ ନିଜ ଶରୀର ପ୍ରତି ରକ୍ତ ବିନ୍ଦୁ କ୍ଷୟକରିଥିଲେ, ଦେହାବସାନର ପରେ ସେ ସେଇ ଇତିହାସରେହିଁ ହୋଇଯାଇଛନ୍ତି ରୂପାନ୍ତରିତ; ସାହିତ୍ୟ ସଂପର୍କିତ ତାହାଙ୍କର ଅମଳିନ ଗବେଷଣା ଆଜିର ଓ ଭବିଷ୍ୟତର ସାହିତ୍ୟିକମାନଙ୍କ ନିକଟରେ ନିର୍ଭରଶୀଳ ବିଶ୍ୱାସଯୋଗ୍ୟ ଦିଗ୍ ନିର୍ଦ୍ଦେଶକର ଭୂମିକା ଆହରଣ କରିଥିବାର ସ୍ପଷ୍ଟ ଉପଲବ୍ଧ ହୋଇଥାଏ ।

ଇତିହାସ ପ୍ରସିଦ୍ଧ ଭୁବନେଶ୍ୱର ଗ୍ରାମରେ କେଦାରନାଥଙ୍କର ଜନ୍ମ । ଏଇ ଗ୍ରାମର ପୂର୍ବ ଓ ପଶ୍ଚିମ ଦିଗର ଅନତି ଦୂରରେ ଯଥାକ୍ରମେ ଧଉଳିଗିରି ଓ ଖଣ୍ଡଗିରି, ଅଶୋକ ଓ ଖାରବେଳଙ୍କ ଅକ୍ଷୟ କୀର୍ତ୍ତିର ଏକ ଏକ ଅବିସ୍ମରଣୀୟ ସ୍ମାରକୀ । ଏଇ ଗ୍ରାମର ଆଉ କିଛି ଦୂରରେ ଗୋଟିଏ ପାଖରେ ଖୋରଧାଗଡ଼ ଓ ଅନ୍ୟ ପାଖରେ ଶ୍ରୀ ଜୟଦେବଙ୍କ ଜନ୍ମସ୍ଥଳୀ କେନ୍ଦୁଲୀ ଓ ପୁରୁଷୋତ୍ତମ କ୍ଷେତ୍ରର ଶ୍ରୀଜଗନ୍ନାଥ । ବୁଦ୍ଧିମାନ ଛାତ୍ର ହିସାବରେ ସୁପରିଚିତ କେଦାରନାଥ ଛାତ୍ରାବସ୍ଥାରୁ ହିଁ ଗଭୀର ଅଧ୍ୟୟନ ଓ ଲିଖନ ପ୍ରତି ସତତ ଅନୁରକ୍ତ ହୋଇ ପଡ଼ିଥିଲେ । ଉତ୍ତରକାଳରେ ଇତିହାସକୁ ଅଧ୍ୟୟନର ମୁଖ୍ୟ ଉପଜୀବ୍ୟ ବିଷୟରୂପେ ଗ୍ରହଣ କରିନେଇ ପୂର୍ବୋକ୍ତ ପାଞ୍ଚୋଟି ସ୍ଥାନ ଓ ତତ୍ସଂପର୍କିତ ଅତୀତ ଐତିହାସିକ କୀର୍ତ୍ତି, ଧର୍ମ ଓ ଦେବତା ଅଥବା ବ୍ୟକ୍ତିବିଶେଷଙ୍କ ଉପରେ ନୂତନ ଗବେ ଗବେଷଣା କରିବାର ଅଭିଳାଷ ମନରେ ପୋଷଣ କରିବା ଏକାନ୍ତ ସ୍ୱାଭାବିକ ବୋଲି ମନେ ହୁଏ । ତାହାଙ୍କ ପ୍ରାଥମିକ ଜୀବନ ଥିଲା ହାଇସ୍କୁଲର ପରିସର ଭିତରେ ସୀମିତ; ଏ ଅବସ୍ଥା ପ୍ରକୃତ ଗବେଷଣା ପାଇଁ ଅନୁକୂଳ ନ ଥିଲା । କିନ୍ତୁ, ୧୯୪୩ ସାଲରୁ ୧୯୫୦ ସାଲ ପର୍ଯ୍ୟନ୍ତ କଳାହାଣ୍ଡି ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗର ଅଧ୍ୟକ୍ଷ, ୧୯୫୦ରୁ ୧୯୬୩ ସାଲ ପର୍ଯ୍ୟନ୍ତ ରାଜ୍ୟ ସଂଗ୍ରହାଳୟର ସଂରକ୍ଷକ ଓ ପରିଶେଷରେ ୧୯୭୧ ସାଲ ପର୍ଯ୍ୟନ୍ତ ରାଜ୍ୟ ସଂଗ୍ରହାଳୟର ସର୍ବୋଚ୍ଚ କର୍ତ୍ତା ହୋଇ ସେ ଯେଉଁ ଦୀର୍ଘ ୨୮ ବର୍ଷ ଅତିବାହିତ କରିଥିଲେ ତାହାହିଁ ତାହାଙ୍କ ଗବେଷଣାକୁ ଉପଯୁକ୍ତ ପରିବେଶ ଯୋଗାଇ ଦେବା ସଙ୍ଗେ ସଙ୍ଗେ ଏକ ଏକ ଉଚ୍ଚ କୋଟୀର ଲେଖା ପ୍ରସ୍ତୁତ କରିବା ଦିଗରେ ଅତୀବ ସହାୟକ ହୋଇଥିଲା । ଖାରବେଳ ( ୧୯୪୧ ସାଲ ) ଓ ଚୋଷଢ଼ୀ ଉଡ଼ିହାସ ( ୧୯୪୪ )—ଏଇ ଦୁଇଟି ପୁସ୍ତକ ଦେଉଛନ୍ତି ତାହାଙ୍କ ଶିକ୍ଷକ ଜୀବନର ସିଦ୍ଧି; କିନ୍ତୁ A descriptive catalogue of Sanskrit Manuscripts of Oissa, Vol. I (1957) and Vol. II (1960) ଖୁର୍ଦ୍ଧା ଇତିହାସ ( ୧୯୬୯, ଶ୍ରୀ ଜୟ ଦେବ ଓ ଶ୍ରୀ ଗୀତ ଗୋବିନ୍ଦ (୧୯୭୩), ସ୍ୱ-ସମ୍ପାଦିତ କେତୋଟି ପ୍ରାଚୀନ କାବ୍ୟ ଓ ବିଭିନ୍ନ ସମୟରେ ଲିଖିତ ବିଭିନ୍ନ ବିଷୟକ ଅଜସ୍ର ପ୍ରବନ୍ଧହିଁ ପୂର୍ବୋକ୍ତ ୨୮ ବର୍ଷ ସାଧନାର ଏକ ଏକ ଅମର କୀର୍ତ୍ତି । ବିଭିନ୍ନ ସ୍ଥଳରୁ ବିଭିନ୍ନ ଉପାଦାନ ଆହରଣ, ଗଭୀର ଅଧ୍ୟୟନ ଓ ମନନ, ସର୍ବୋପରି ପ୍ରବନ୍ଧ କିମ୍ବା ପୁସ୍ତକ ରୂପରେ ନିଜ ସାଧନାର ପରିପ୍ରକାଶ—ଏହାହିଁ ଥିଲା କେଦାରନାଥଙ୍କ ଜୀବନର ଏକମାତ୍ର ବ୍ରତ । ଜଣେ ନିଷ୍ଠାପର ସାଧକ ହିସାବରେ ପ୍ରଗାଢ଼ ଆତ୍ମ ପ୍ରତ୍ୟୟରସହ ଏଇ ସାତ୍ତ୍ୱିକ ବ୍ରତକୁ ସେ ଯେପରି ନିଜ ଜୀବନରେ ପାଳନ କରି ଆସିଛନ୍ତି ଜଣେ ନିଜ ଆଖିରେ ଦେଖି ନଥିଲେ ତାହା ବିଶ୍ୱାସ କରିନେବା ସମ୍ଭବ ନୁହେଁ । କେଦାରନାଥ ଥିଲେ କଠୋର ଅଧ୍ୟବସାୟର ଏକ ମୂର୍ତ୍ତିମନ୍ତ ବିଗ୍ରହ । ତାଙ୍କର ବିବିଧ ଲେଖା ସେଇ ବିଗ୍ରହର ସିଦ୍ଧିଦୀପ୍ତ ଶାଶ୍ୱତ ସମ୍ପଦ ମାତ୍ର ।

ଇତିହାସ-ଆଲୋଚନାର ବୃହତର ମାନଚିତ୍ରରେ ଐତିହାସିକ କେଦାରନାଥଙ୍କ ସ୍ଥାନ ଆମ ଅପେକ୍ଷା ଏ ଦେଶର ଐତିହାସିକମାନଙ୍କ ଦ୍ୱାରା ନିରୂପିତ ହେବା ଏକାନ୍ତ ସୁସଙ୍ଗତ । ତେଣୁ ଓଡ଼ିଆ ସାହିତ୍ୟର ଆଲୋଚନାରେ ତାଙ୍କର ଭୂମିକା ଆମ ବିଚାରରେ ବିଶେଷ ଗୁରୁତ୍ୱପୂର୍ଣ୍ଣ ଥିବାରୁ ସେ ସମ୍ପର୍କରେ ଏଠାରେ କିଛି ଅବତାରଣା କରଯାଉଅଛି ।

କେଦାରନାଥଙ୍କ ସାହିତ୍ୟାଲୋଚନାର ଆଭିମୁଖ୍ୟ ଥିଲା ଦୁଇଟି । କୌଣସି କବି ଓ ତାହାଙ୍କ କୃତିର ଆଲୋଚନା ଏବଂ ପାଣ୍ଡିତ୍ୟପୂର୍ଣ୍ଣ ମୁଖବନ୍ଧ ସହ କେତେକ ଅପ୍ରକାଶିତ ପୁସ୍ତକର ସମ୍ପାଦନା—ଏଥିରେ ବହୁଉପାଦେୟତାଥିଲେ ହେଁ ସାହିତ୍ୟ-ସ୍ରଷ୍ଟାର ମାନସିକ ଭଙ୍ଗୀ ଉପରେ ପ୍ରତିଷ୍ଠିତ ସୃଷ୍ଟିର ଲଳିତ କଳା-ବିଭବର ପରିପୂର୍ଣ୍ଣ ବିଶ୍ଳେଷଣ ଜଣେ ଐତିହାସିକଙ୍କଠାରୁ ଆଶାକରାଯାଇ ନପାରେ । ଫଳରେ

ତାହାଙ୍କ ସାହିତ୍ୟାଲୋଚନା ପୂର୍ଣ୍ଣତଃ ଇତିହାସ-ମୁଖୀ ହେବାକୁ ବାଧ୍ୟ । କିନ୍ତୁ ତାହାଙ୍କ ଦ୍ୱିତୀୟ ଅଭିମୁଖ୍ୟ ହେଉଛି ଆମ ବିଚାରରେ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ । ଜଣେ ଐତିହାସିକ ସାହିତ୍ୟ-ସଚେତନ ହୋଇ ନିଜ ସଂଗୃହୀତ ଉପାଦାନ ସାହାଯ୍ୟରେ ଯେଉଁ ଆଲୋଚନା କରିଥାନ୍ତି, ଅନ୍ୟ ଜଣେ ସାହିତ୍ୟ-ସମୀକ୍ଷକଙ୍କ ସମାଲୋଚନାରେ ସେହି ଆଲୋଚନା ଭିତ୍ତିଭୂମି ରୂପେ ବ୍ୟବହୃତ ହେବା ଏକାନ୍ତ ସ୍ୱାଭାବିକ । କେଦାରନାଥଙ୍କ ଅଧିକାଂଶ ଲେଖାକୁ ଏହି ଦୃଷ୍ଟିରୁ ବ୍ୟବହାର କଲେ ସାହିତ୍ୟ-ଆଲୋଚନା ଯେ ଏକ ସ୍ଥିରତର ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇ ନବ ନବ ରୂପରେ ବିକାଶ ଲାଭ କରିବାର ସମ୍ଭାବନା ଅଛି, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଏହାର କେତୋଟି ଉଦାହରଣ ଦେଖନ୍ତୁ । ଅଶୋକଙ୍କଠାରୁ ଖାରବେଳ, ଶ୍ରୀ ଜଗନ୍ନାଥଙ୍କଠାରୁ ଶ୍ରୀ ଜୟଦେବ କିମ୍ବା ଶୂନ୍ୟବାଦଠାରୁ ଭକ୍ତିବାଦ ପର୍ଯ୍ୟନ୍ତ ତାହାଙ୍କ ବିଭିନ୍ନ ଲେଖାରେ ଯେଉଁସବୁ ବିଷୟ ଆଲୋଚନା କରଯାଇଛି, ବିଭିନ୍ନ ଯୁଗରେ ଓଡ଼ିଶାରେ ପ୍ରସ୍ଫୁରିତ ବିଭିନ୍ନ ଆଧ୍ୟାତ୍ମିକ ଚେତନାର ବିଶଦ ବିଶ୍ଳେଷଣ, ତାହାରି ସହାୟତାରେ ପରିପୂର୍ଣ୍ଣ ହେବାର ସମ୍ଭାବନା ଯଥେଷ୍ଟ ଅଛି । ସଂସ୍କୃତ ସାହିତ୍ୟ ହେଉଛି ଓଡ଼ିଆ କାବ୍ୟଯୁଗ ସାହିତ୍ୟର ମୌଳିକ ଆଧାର ସ୍ତମ୍ଭ, କିନ୍ତୁ ଏହି ମୌଳିକ ସ୍ତମ୍ଭର ସମସ୍ତ ମୂଲ୍ୟବାନ ଉପାଦାନ ପୂର୍ବ ଲିଖିତ ସଂସ୍କୃତ କାଟଲଗ୍‌ରେ ସୂଚିତ ହୋଇଥିଲେହେଁ ତା'ରି ସାହାଯ୍ୟରେ ଓଡ଼ିଆ କାବ୍ୟର ଯଥାର୍ଥ ବିଶ୍ଳେଷଣ ପ୍ରତି କେହି ସମୁଚିତ ଦୃଷ୍ଟି ଦେଇଛନ୍ତି ବୋଲି ମନେହୁଏ ନାହିଁ । ଦୀର୍ଘ ଅଢ଼େଇ ଶହ ବର୍ଷ (୧୫୬୮—୧୮୧୭) ଭିତରେ ଆବିର୍ଭୂତ କବି ଓ ସେମାନଙ୍କ କୃତିର ସଠିକ ରଚନା ସମୟ 'ଖୁର୍ଦ୍ଧା ଇତିହାସ' ପୁସ୍ତକରେ ଅବଧାରିତ ହୋଇଅଛି । ଏହାରି ଅବଲମ୍ବନରେ ମଧ୍ୟ ଯୁଗୀୟ ଓଡ଼ିଆ ସାହିତ୍ୟର ଇତିହାସ ପ୍ରଣୟନ କରିବା ଅତିଶୟ ସହଜ ହୋଇ ପଡ଼ିଅଛି । ପ୍ରକୃତଃ, ଏତିକି କୁହାଯାଇ ପାରେ ଯେ କେଦାରବାବୁ ପ୍ରସଙ୍ଗବିଶେଷରେ ସାହିତ୍ୟର ଆଲୋଚନା କରିଥିଲେ ହେଁ ତାହାହିଁ ତାଙ୍କ ଅବଦାନର ଶେଷ ପରିଚୟ ନୁହେଁ । କିଛି କହିବା ଅପେକ୍ଷା ନ କହି ଯାହା ସେ ସଂଗ୍ରହ କରିଯାଇ ଅଛନ୍ତି ତାହାହିଁ ତାଙ୍କ ଅଧ୍ୟବସାୟର ସର୍ବଶ୍ରେଷ୍ଠ କୃତିତ୍ୱ । ଏହି କୃତିତ୍ୱ ହେଉଛି ଏକାନ୍ତଭାବେ ଅନନ୍ୟସାଧାରଣ । ଅନ୍ୟ ଐତିହାସିକମାନଙ୍କ କଥା ଦୂରେ ଥାଉ, ଖୋଦ୍ ସାହିତ୍ୟ ସମୀକ୍ଷକମାନଙ୍କ ମଧ୍ୟରୁ କାହାରି ଭାଗ୍ୟରେ ମଧ୍ୟ ଏପରି କୃତିତ୍ୱ ଦେଖିବାକୁ ମିଳେ ନାହିଁ । ଓଡ଼ିଆ ସାହିତ୍ୟର ସାର୍ଥକ ବିଶ୍ଳେଷଣ ପାଇଁ ଏପରି ନିର୍ଭରଯୋଗ୍ୟ ଭିତ୍ତି-ନିର୍ମାଣ ଆଉ କାହା ହାତରେ ଭବିଷ୍ୟତରେ କେବେ ସମ୍ଭବପର ହେବ ବୋଲି ମନରେ ବିଶ୍ୱାସ ହେଉ ନାହିଁ ।

କେଦାରନାଥଙ୍କ ସାହିତ୍ୟିକ ଅବଦାନର ଏକ ସ୍ଥୂଳ ପରିଚୟ ପ୍ରଦାନ ବ୍ୟତୀତ ତା'ର ବିଶଦ ଆଲୋଚନା କରିବା ବର୍ତ୍ତମାନ ସମ୍ଭବ ନୁହେଁ । ଭବିଷ୍ୟତରେ ଏପରି ଏକ ଗୁରୁତର କାର୍ଯ୍ୟରେ ହାତ ଦେବାର ସୁଯୋଗ ମିଳି ପାରିଲେ ଏହି ଲେଖକ ନିଜକୁ ବିଶେଷ ଭାଗ୍ୟବାନ ବୋଲି ମନେ କରିବ ।

ବାଣୀ ଭବନ, ସାମନ୍ତରାପୁର

ଭୁବନେଶ୍ୱର-୨

